ବ୍ୟାସକବି ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପ

ପେଟେଣ୍ଟ ମେଡ଼ିସିନ୍‌ର ମଞ୍ଚ ନାଟ୍ୟରୂପ

# ବାବୁ ଚନ୍ଦ୍ରମଣି

ଗୋପାଳ ଛୋଟରାୟ



ଫ୍ରେଣ୍ଡସ୍ ପବ୍ଲିଶର୍ସ

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ-୨

ବାବୁ ଚନ୍ଦ୍ରମଣି (ନାଟକ)—ନାଟ୍ୟକାର ଗୋପାଳ ଛୋଟରାୟ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଚ୍ଛଦପଟ : ଅସିତ୍ ମୁଖାର୍ଜୀ, ପ୍ରଥମ ସଂସ୍କରଣ ୧୯୯୨, ମୁଦ୍ରଣ : ଜଗାବଳିଆ ପ୍ରିଣ୍ଟର୍ସ, କଟକ-୧



**BABU CHANDRAMANI** ( Drama )—Writer Gopal Chhotray, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), Cover Design : Asit Mukherjee, 1st Edition : 1992, Printer Jagabalia Printers, Jagannathballav, Cuttack-1.

Price Rs. 25.

# ଉତ୍ସର୍ଗ

ଅକ୍ଷୟ
ସ୍ନେହଲତା

ପରମ ସ୍ନେହ, ଶ୍ରଦ୍ଧା ଓ ଆଶୀର୍ବାଦ ସହ

ଗୋପାଳ

# ଗ୍ରନ୍ଥ ପ୍ରବେଶ

'ବାବୁ ଚନ୍ଦ୍ରମଣି' ମଞ୍ଚ ନାଟକର ଏଇ ଗ୍ରନ୍ଥ ପ୍ରବେଶ ପୃଷ୍ଠାରେ କିଛି ବକ୍ତବ୍ୟର ପ୍ରୟୋଜନ ପଡ଼ୁଛି । ବ୍ୟାସକବିଙ୍କ ବିରଚିତ ଅମର କାହାଣୀ ଓ ଉପନ୍ୟାସ ଆଦିର ବେତାର ନାଟ୍ୟରୂପ ପ୍ରଣୟନର ପ୍ରଥମ ସୌଭାଗ୍ୟ ମୋର ହିଁ ଘଟିଥିଲା । ପ୍ରଥମେ ଧୂଳିଆ ବାବା, ସୁନାକୋଠି, ଘରେଇ ବିଶାଳ ପ୍ରଭୃତି କେତୋଟି ଶ୍ରେଷ୍ଠ ଗଳ୍ପ ଓ ମାମୁ ଓ ଛ'ମାଣ ଆଠଗୁଣ୍ଠ—ଏ ସବୁର ମତ୍ ପ୍ରଣୀତ ନାଟ୍ୟରୂପ ବେତାରରେ ପ୍ରସାରଣ ପରେ ପେଟେଣ୍ଟ ମେଡ଼ିସିନ୍ ଗଳ୍ପର ନାଟ୍ୟରୂପ ପ୍ରଦାନର ପ୍ରଶ୍ନ ଉଠିଲା । ପେଟେଣ୍ଟ ମେଡ଼ିସିନ୍‌ର ଗଳ୍ପାଂଶ ଯାହା, ସେଥିରେ ବାବୁ ଚନ୍ଦ୍ରମଣି ତାଙ୍କ ସ୍ତ୍ରୀ ସା'ନ୍ତାଣୀ ସୁଲୋଚନା ଦେଈଙ୍କ ଶ୍ରୀହସ୍ତରୁ ଝୁଞ୍ଚୁଣୀ ମୂଠା ପ୍ରହାରର ଉପରେ ଥରହର ହୋଇ ଉଠୁଥିଲେ ଓ ଶେଷରେ ପ୍ରହାର ଖାଇଲେ । ଯେଉଁ ଲେଖକଟି ରଙ୍ଗମଞ୍ଚରେ ଏଇ ଦୃଶ୍ୟ ଅଭିନୀତ ହେବାର ଦାୟିତ୍ୱ ନେବ, ସିଏ ଯେମିତି ଏ ଯୁଗର ସୁଲୋଚନାମାନଙ୍କ ଶ୍ରୀକରରୁ ଗଞ୍ଜଣା ପାଇବା ଅସମ୍ଭବ ନୁହେଁ । ମାତ୍ର ଯେତେବେଳେ କଟକ ବେତାର କେନ୍ଦ୍ର (ମୁଁ ବେତାର କେନ୍ଦ୍ରର କର୍ମଚାରୀ) ଓ ତତ୍କାଳୀନ ବହୁ ଚର୍ଚ୍ଚିତ ଓ ବହୁ ପ୍ରଶଂସିତ କୁମାର ସମିତି ଉତ୍ସବ ଦ୍ୱାରା ପେଟେଣ୍ଟ ମେଡ଼ିସିନ୍ ଗଳ୍ପର ନାଟ୍ୟରୂପ ଯଥାକ୍ରମେ ପ୍ରସାରିତ ଓ ମଞ୍ଚାଭିନୀତ ହେବାର ସ୍ଥିରୀକୃତ ହେଲା, ମୁଁ, ପେଟେଣ୍ଟ ମେଡିସିନ୍‌ର ନାଟ୍ୟରୂପ ଦେଇ ନ ପାରିବାର କୌଣସି ଆଳ ଖୋଜି ପାଇଲି ନାହିଁ । ବେତାରରେ ପ୍ରସାରଣ ତ କେବଳ ଶ୍ରବଣରେ ହିଁ ଶେଷ ହୁଏ । କିନ୍ତୁ

ସେଦିନ କୁମାର ସମିତି ଉତ୍ସବରେ ଏଇ ପେଟେଣ୍ଟ ମେଡ଼ିସିନ୍ ନାଟକର ସ୍ୱାମୀକୁ ସ୍ତ୍ରୀ ଝାଞ୍ଜୁଣୀ ମୂଠା ପ୍ରହାରର ଦୃଶ୍ୟଟି ଅଭିନୀତ ହେଲାବେଳେ ପ୍ରେକ୍ଷାଳୟରେ ଉପସ୍ଥିତ ଓଡ଼ିଆ ଘରର ପ୍ରାୟ ଦୁଇ ସହସ୍ରାଧିକ ସୁ-ନାରୀଙ୍କ ପ୍ରତିକ୍ରିୟା କପରି ଭାବରେ କେଉଁଠୁ ସୃଷ୍ଟି ହୋଇ କେତେ ଗହଳକୁ ବ୍ୟାପିବ, ସେଇ ଆଶଙ୍କାରେ ଏ ନାଟକର ଲେଖକ ଭାବରେ ମୁଁ ନିଜେ ପ୍ରେକ୍ଷାଳୟରେ ଉପସ୍ଥିତ ନ ରହି ନିଜକୁ ଲୁକ୍କାୟିତ କରି ରଖିଥିଲି । ଭୂପୃଷ୍ଠରୁ ଶୂନ୍ୟମାର୍ଗକୁ ରକେଟ୍ ପ୍ରେରଣ ମୁହୂର୍ତ୍ତରେ ଯେପରି କାଉଣ୍ଟ୍ ଡାଉନ୍ କରାଯାଏ, ସେଇପରି ନାଟକର ଝାଞ୍ଜୁଣୀ ମୂଠା ପ୍ରହାର ଦୃଶ୍ୟ ଆରମ୍ଭର କାଉଣ୍ଟ ଡାଉନ୍ ମୁଁ କରୁଥାଏ । କାଉଣ୍ଟ୍ ଡାଉନ୍ ଶେଷ ହେଲା, ଦୃଶ୍ୟ ଆରମ୍ଭ ହେଲା—କିନ୍ତୁ ଏ କ'ଣ ମୁଁ ଦେଖୁଚି ! ପ୍ରେକ୍ଷାଳୟର ଗୋଟିଏ ପାର୍ଶ୍ୱରେ ମହିଳାମାନେ ଓ ଅନ୍ୟ ପାର୍ଶ୍ୱରେ ପୁରୁଷମାନେ ବସିଥା'ନ୍ତି । ଯେମିତି ପ୍ରହାର ଆରମ୍ଭ ହେଇ-ଗଲା, ଏ ପାଖର ସହସ୍ରାଧିକ ମହିଳାମାନଙ୍କର ଆନନ୍ଦ ଉଲ୍ଲସିତ ନାଦ ଓ କରତାଳିରେ ପ୍ରେକ୍ଷାଳୟ ପ୍ରକମ୍ପିତ ହୋଇଉଠିଲା । ସ୍ୱସ୍ତିର ନିଃଶ୍ୱାସ ମାରି ମୁଁ ମୋ ଗୋପନ ରହଣି ସ୍ଥଳରୁ ବାହାରି ଆସିଲି । ମୁଁ ଯେତେ ସଙ୍କୋଚ ବୋଧ କଲେ ସୁଦ୍ଧା ସେଦିନ ପ୍ରାୟ ଏକ ଘଣ୍ଟା ଅବଧିର ପେଟେଣ୍ଟ ମେଡିସିନ୍ ନାଟକର ମଞ୍ଚ ଅଭିନୟ ଯେ ଏକାନ୍ତ ହୃଦୟଗ୍ରାହୀ ହେବା ସଙ୍ଗେ ସଙ୍ଗେ ମତେ ବହୁ ଦିଗରୁ ଅନୁ-ପ୍ରାଣିତ କରିଥିଲା, ଏକଥା ମୁଁ ଅସ୍ୱୀକାର କରିପାରିବି ନାହିଁ । ବେତାର ଓ ମଞ୍ଚରେ ଅଭିନୀତ ହେବା ପରେ ଓଡ଼ିଶାର ଦୁଇ ଗୁଣୀ କଳାକାର—ସଙ୍ଗୀତଜ୍ଞ ଅକ୍ଷୟ ମହାନ୍ତି ଓ ନାଟ୍ୟକଳା ବିଶାରଦ ହେମନ୍ତ ଦାସ ବିନା ବାକ୍ୟ ବ୍ୟୟରେ ମତେ ପରାମର୍ଶ ଦେଲେ—ପେଟେଣ୍ଟ ମେଡ଼ିସିନ୍‌ର ଏକ ଗୀତିନାଟ୍ୟ ରୂପ ପ୍ରଦାନ କରନ୍ତୁ । ମୋର ପ୍ରଥମ ପ୍ରତିକ୍ରିୟାରୁ ମନେହେଲା ଏହା ଏକ ଲୋଭନୀୟ ପ୍ରସ୍ତାବ । ପୂର୍ବରୁ ମୁଁ ବହୁ ପୌରାଣିକ

ଗୀତିନାଟ୍ୟ ରଚନା କରୁଛନ୍ତି ଓ ସେ ସବୁ ଜନସାଧାରଣରେ ଆଦୃତ ହେଉଛି । ଏକ ସାଧାରଣ ସାମାଜିକ ବିଷୟବସ୍ତୁ ଉପରେ ଗୀତିନାଟ୍ୟ ରଚନା ଆଦୌ ସ୍ପୃହଣୀୟ ନୁହେଁ । କିନ୍ତୁ ମୁଁ ହୃଦୟଙ୍ଗମ କରିପାରିଲି ଯେ, ବ୍ୟାସକବି ଫେଟେଶ୍ୱର ମେଡ଼ିସିନ୍ ଗଳ୍ପ ଲେଖିଲାବେଳେ ସତେ ଯେପରି ଏହାର ଏକ ଗୀତିନାଟକର ଛାୟା ତାଙ୍କ ସ୍ୱପ୍ନରାଜ୍ୟରେ ବିଚରଣ କରୁଥିଲା । ପାରିବି ତ ତାଙ୍କର ଏଇ ସ୍ୱପ୍ନକୁ ମୁଁ ସାକାର କରିବି—ଏଇ ଚିନ୍ତାରେ ଅନୁପ୍ରାଣିତ ହୋଇ ମୁଁ ଫେଟେଶ୍ୱର ମେଡ଼ିସିନ୍‌ର ଗୀତିନାଟ୍ୟ ଶ୍ରୀମତୀ ସମାର୍ଜ୍ଜନୀ ଲେଖିଲି । ମୁଖ୍ୟ ଭୂମିକା ଓ ସଙ୍ଗୀତ ପରିଚାଳନାରେ ଅକ୍ଷୟ ମହାନ୍ତି । ସେ ବର୍ଷ କଟକ ଆକାଶବାଣୀ ବାର୍ଷିକ ନାଟକ ଉତ୍ସବରେ ଏହା ପ୍ରସାରିତ ହେଲା ଓ ଦର୍ଶଦ୍ୱାରଖୀୟ ସ୍ତରରେ ସର୍ବଶ୍ରେଷ୍ଠ ସଙ୍ଗୀତଧର୍ମୀ ନାଟକରୂପେ ପୁରସ୍କୃତ ହେଲା । ତାପରେ ଏହାର ଏକ ଲଙ୍ଗ୍ ପ୍ଲେ (L.P.) ରେକର୍ଡ଼ ଅକ୍ଷୟ ମହାନ୍ତିଙ୍କ ଦ୍ୱାରା ପ୍ରସ୍ତୁତ ହେଲା । ଏହା ହେଉଛି ଓଡ଼ିଆ ଭାଷାରେ ସର୍ବପ୍ରଥମ L.P. ରେକର୍ଡ଼ ।

ଏହାର କିଛିଦିନ ପରେ ଚଳଚ୍ଚିତ୍ର ପ୍ରଯୋଜକ ଶ୍ରୀ ବସନ୍ତ ନାୟକ ଓ ଅକ୍ଷୟ ମହାନ୍ତି ଆସିଲେ । ତାଙ୍କର ପ୍ରସ୍ତାବ ମୁଁ ଏକ ଅଡ଼େଇ ଘଣ୍ଟାର ସମ୍ପୂର୍ଣ୍ଣ ମ୍ୟୁଜିକାଲ୍ ବା ସଙ୍ଗୀତଧର୍ମୀ ଚଳଚ୍ଚିତ୍ର ପାଇଁ ଶ୍ରୀମତୀ ସମାର୍ଜ୍ଜନୀର ଏକ ଚିତ୍ର-ରୂପ ଲେଖିବି । ଓଡ଼ିଆ ଚଳଚ୍ଚିତ୍ର ଆରମ୍ଭ ଦିନୁ ଏ ଶ୍ରେଣୀର କୌଣସି ଚଳଚ୍ଚିତ୍ର ପୂର୍ଣ୍ଣ ସାଫଲ୍ୟ ଲାଭ କରିନି, ସେଥିପାଇଁ ମୁଁ ଏଭଳି ଏକ ଦାୟିତ୍ୱ ନେଇ ପାରିବି ନାହିଁ ବୋଲି ସେମାନଙ୍କୁ ଜଣେଇଦେଲି । ସେମାନେ ମଧ୍ୟ ମୋର ଏ ପ୍ରସ୍ତାବକୁ ସ୍ୱୀକାର କରିନେଲେ ।

ତା'ପରେ ସେଇ ସ୍ମରଣୀୟ ଦିନ । ସେଦିନ ଆସିଲେ ତୁଷାର ପାଣିଗ୍ରାହୀ, ଅନନ୍ତ ମହାପାତ୍ର ଓ ହେମନ୍ତ

ଦାସ । ପରେ କଥାରେ ସେମାନେ ମତେ କହିଲେ—ପେଟେଣ୍ଟ ମେଡ଼ିସିନ୍‌ର ଏକ ପୂର୍ଣ୍ଣାଙ୍ଗ ଚଳଚ୍ଚିତ୍ର ତୁଷାରବାବୁ ନିର୍ମାଣ କରିବେ, ଚିତ୍ରନାଟ୍ୟ ମତେ ଲେଖିବାକୁ ହେବ··· ସେମିତି ପରେ କଥାରେ ମୁଁ ତାଙ୍କୁ ଜଣାଇଦେଲି—ଏ ଚିତ୍ରନାଟ୍ୟ ମୁଁ ଲେଖିବି ।···ରେକର୍ଡ଼ ସମୟ ମଧ୍ୟରେ ମୁଁ ଏ ଚିତ୍ରନାଟ୍ୟଟି ଲେଖିଲି—ନାମ ରହିଲା ବାବୁ ଚନ୍ଦ୍ରମଣି । ଅତି ଉତ୍ସାହର ସହିତ ତୁଷାରବାବୁ ତାଙ୍କ ପ୍ରଯୋଜନା କର୍ମରେ ଲାଗିପଡ଼ିଲେ । ମହୁରତ ଦିନ ପର୍ଯ୍ୟନ୍ତ ଠିକ୍ ହୋଇଗଲା, କିନ୍ତୁ ତୁଷାରବାବୁଙ୍କ ପାରିବାରିକ ଜୀବନରେ ଏପରି ଏକ ଦୁଃଖ-ଶୋକଦାୟକ ଘଟଣା ଘଟିଲା, ଯେଉଁଥିରେ ସେ 'ବାବୁ ଚନ୍ଦ୍ରମଣି' ଚିତ୍ର ନିର୍ମାଣ କର୍ମରୁ ଅପସରି ଯିବା ବ୍ୟତୀତ ଅନ୍ୟ କୌଣସି ପନ୍ଥା ନ ଥିଲା । ଏହି ଘଟଣାରେ ମୁଁ ମଧ୍ୟ ଖୁବ୍ ମର୍ମାହତ ହୋଇପଡ଼ିଥିଲି । ଏହାର ପ୍ରାୟ ଏକ ବର୍ଷ ପରେ ଅନ୍ୟ ଜଣେ ପ୍ରଯୋଜକ ଆସି ମୋ'ଠାରୁ ଚିତ୍ରନାଟ୍ୟଟିର ସ୍ୱତ୍ୱ କିଣିନେଲେ । କେଜାଣି କେଉଁ ଦୁଷ୍ଟ ଗ୍ରହର ପ୍ରଚଳନ ଯୋଗୁ, ଏହି ନୂତନ ପ୍ରଯୋଜକଙ୍କ ଆପ୍ରାଣ ଚେଷ୍ଟା ସତ୍ତ୍ୱେ, ସାତ ବର୍ଷ ବିତିଗଲା, କିନ୍ତୁ ସେ ଚିତ୍ରଟିର ମହୁରତ କରି ପାରିଲେନି । ଶେଷରେ ମୋ ଲେଖାଟି ମତେ ଫେରାଇ ଦେଲେ ।···ଏହି ଘଟଣାର କିଞ୍ଚିତ୍ ସିଂହାବଲୋକନରେ ମୁଁ ସ୍ଥିର ସିଦ୍ଧାନ୍ତ ଗ୍ରହଣ କରିନେଲି ଯେ ପେଟେଣ୍ଟ ମେଡ଼ିସିନ୍ ଗଳ୍ପ ସହିତ ମୋର ଯେଉଁ ସମ୍ପର୍କ—ତାହାର ସମାପ୍ତି ଏଇଠି ଘଟିଲା । ମାତ୍ର ମୋ ଜୀବନର ବହୁ ତଥ୍ୟ ପରି ସେଦିନଟି ମଧ୍ୟ ଗୋଟିଏ ତଥ୍ୟ ଥିଲା । ପ୍ରବୀଣ ପ୍ରକାଶକ ଶ୍ରୀଯୁକ୍ତ ସହଦେବ ପ୍ରଧାନଙ୍କ ସହିତ କିଛି କଥାବାର୍ତ୍ତା ବେଳେ ପେଟେଣ୍ଟ ମେଡ଼ିସିନ୍‌ର ଏକ ପୂର୍ଣ୍ଣାଙ୍ଗ ମଞ୍ଚ ନାଟକ ଦେବାର ପ୍ରସଙ୍ଗ ମୋ ମୁହଁରୁ ଶୁଣି ସେ ଦାବି କରି ବସିଲେ ଯେ, ଯଦି ତୁଷାରବାବୁ ଏ ଚିତ୍ରଟି ନିର୍ମାଣ କରିଥା'ନ୍ତେ, ତେବେ ଏହାର ସମ୍ପୂର୍ଣ୍ଣ ଚିତ୍ରନାଟ୍ୟଟି ସେ ପ୍ରକାଶ କରିଥା'ନ୍ତେ । ଏ ବିଷୟରେ ସମସ୍ତ ପ୍ରାରମ୍ଭିକ କଥାବାର୍ତ୍ତା ଚୂଡ଼ାନ୍ତ ହୋଇସାରିଥିଲା ଓ

ଏହା ଓଡ଼ିଆ ଭାଷାରେ ପ୍ରଥମ ପୁସ୍ତକ ଆକାରରେ ପ୍ରକାଶିତ ଚିତ୍ରନାଟ୍ୟ ହୋଇଥା'ନ୍ତା । ଏଇଠି ମୋର ସ୍ମରଣ ହେଲା ଯେ ଏଇ ଚିତ୍ରନାଟ୍ୟ ପୁସ୍ତକ ଆକାରରେ ପ୍ରକାଶକରିବା ଘଟଣାରେ ମୁଁ ମଧ୍ୟ ସଂପୃକ୍ତ ଥିଲି ଓ ଏଥିପାଇଁ ଚିତ୍ରନାଟ୍ୟର ଗୋଟିଏ କପି ଅକ୍ଷତ ଅବସ୍ଥାରେ ରଖିଥିଲି । ସେଦିନ ଅଜ୍ଞାତରେ କେତୋଟି ଘଟଣାର ସଂଯୋଗ ଏମିତି ଘଟିଲା, ଯାହାଫଳରେ ପେଟେଣ୍ଟ ମେଡ଼ିସିନ୍ ଗଳ୍ପର ଆପାତତଃ ଅନ୍ତିମ ରୂପ ଏଇ ମଞ୍ଚ ନାଟକ "ବାବୁ ଚନ୍ଦ୍ରମଣି" ଫ୍ରେଣ୍ଡ୍ସ୍ ପବ୍ଲିଶର୍ସଙ୍କ ଦ୍ୱାରା ଏବେ ପ୍ରକାଶିତ ହେଉଛି । ଏକଥା ଏଠି କହିରଖେ ଯେ ପ୍ରାୟ ୧୯୬୦ ମସିହାରୁ ଏ ଅବଧି ପେଟେଣ୍ଟ ମେଡ଼ିସିନ୍ ଗଳ୍ପ ଯେଉଁ ସ୍ତର ଓ ଯେତେଯେତେ ମୋଡ଼ଆ ଅତିକ୍ରମ କରି ଆଜି ଆସି ଏଇ ସମ୍ମାନଜନକ ଅବସ୍ଥାରେ ଉପନୀତ ହୋଇଛି, ତାହା ବୋଧହୁଏ ଓଡ଼ିଆ ଭାଷାରେ ଅନ୍ୟ କୌଣସି ଗଳ୍ପର ଯାତ୍ରା ପଥରେ ଘଟିନି ।

ଆଲମ୍‌ଚାନ୍ଦ ବଜାର
କଟକ-୨
ଦଶହରା : ୧୯୯୨

**ଗୋପାଳ ଛୋଟରାୟ**

ଚରିତ୍ର

ପୁରୁଷ

| | |
|---|---|
| ଚନ୍ଦ୍ରମଣି | ଯୁବକ ଜମିଦାର |
| ଶ୍ୟାମ | ଜମିଦାର, ଚନ୍ଦ୍ରମଣିଙ୍କ ପିତା |
| ମକର | ଚନ୍ଦ୍ରମଣିଙ୍କ ଭୃତ୍ୟ |
| ନରହରି | ଜମିଦାରଙ୍କର କର୍ମଭୃଷ |
| ଗୋପୀ | ଜଣେ ସହରବାସୀ ଭଦ୍ରଲୋକ |
| କଶନ୍ | ଉସ୍‌ମାନର ବିଶ୍ୱାସୀ ଭୃତ୍ୟ |

ସ୍ତ୍ରୀ

| | |
|---|---|
| ସୁଲୋଚନା | ଚନ୍ଦ୍ରମଣିଙ୍କ ନବବିବାହିତା ପତ୍ନୀ |
| ଉସ୍‌ମାନ | ଜଣେ ରୂପ ବିଳାସିନୀ |
| ହେନା | ଉସ୍‌ମାନ୍‌ର ବାଳିକା ଦାସୀ |
| ମଲ୍ଲୀମା | ସୁଲୋଚନାଙ୍କ କଟକ ଦାସୀ |

---

ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ ପ୍ରକାଶିତ
ଶ୍ରୀ ଗୋପାଳ ଛୋଟରାୟଙ୍କ ରଚିତ ଅନ୍ୟ ନାଟକ

ଶଙ୍ଖ ସିନ୍ଦୂର

ବାବାଜୀ (ଗୀତିନାଟ୍ୟ)

ନଷ୍ଟ ଉର୍ବଶୀ

# ପ୍ରଥମାଙ୍କ

[ କଟକ ସହର—କାଳୀ ଗଳି । ଏକ ସୁଦୃଶ୍ୟ ବାସଗୃହର ଗୋଟିଏ ଅପେକ୍ଷାକୃତ ଶ୍ରେଷ୍ଠ କୋଠରୀ । କୋଠରୀରେ ଗୋଟିଏ ଶ୍ରେଷ୍ଠ ପଲଙ୍କ ଓ ଗୋଟିଏ ସାଧାରଣ ଚୌକି ବ୍ୟତୀତ ଅନ୍ୟ କିଛି ଉପକରଣ ନାହିଁ । କୋଠରୀରେ ଗୋଟିଏ ପ୍ରବେଶ ଦ୍ୱାର ଓ ଭିତରେପଟ ବାରନ୍ଦା ସଂଲଗ୍ନ ଗୋଟିଏ ଝରକା ବିଦ୍ୟମାନ ।

କାଳ—ଊନବିଂଶ ଶତାବ୍ଦୀର ଶେଷଭାଗ ।

ସମୟ—ପୂର୍ବାହ୍ନ ।

ପଲଙ୍କ ଉପରେ ବସିଚନ୍ତି ଏଇ ନାଟକର ନାୟକ ଚନ୍ଦ୍ରମଣି ବାବୁ—ଦେହରେ ତତ୍କାଳୀନ ଜମିଦାର-ସନ୍ତାନ ସୁଲଭ ଜାମାପଟା । ବସିଛନ୍ତି ସତ, ତାଙ୍କ ମୁହଁରେ ରାଗ, ଦୁଃଖ, ବିରକ୍ତି ଓ ଅସ୍ଥିରଭାବ । ସତେ ଯେମିତି ସେ ଜେଲ୍‌ଖାନାର ଏକ ସେଲ୍‌ରେ ଆବଦ୍ଧ । କେତେବେଳେ ତକାମାଡ଼ି ବସୁଚନ୍ତି ତ, କେତେବେଳେ ଗୋଡ଼ ଟେକି ବସୁଚନ୍ତି ।···କିଛି ସମୟ ପରେ ଆସିଲେ ସ୍ତ୍ରୀ ସୁଲୋଚନା । ସେମାନଙ୍କର ବିବାହ ଦୁଇବର୍ଷ ବି ପୂର୍ଣ୍ଣ ହୋଇନାହିଁ । ସୁଲୋଚନା ଝରକା ବାହାରପଟେ ଆସି ଠିଆ ହୋଇ ଓଠ କାମୁଡ଼ି ସ୍ୱାମୀଙ୍କୁ ଚାହିଁଲେ—ଚାହିଁଲେ ଏଇ ଦୃଷ୍ଟିରେ ଯେ ସ୍ୱାମୀଙ୍କୁ ଏ ଘରେ ଅଟକବନ୍ଦୀ କରାଇ ସେ ଠିକ୍ କାମ କରିଚନ୍ତି । ବାବୁ ଏ ପର୍ଯ୍ୟନ୍ତ ତାଙ୍କୁ ଦେଖିନାହାନ୍ତି ]

ସୁଲୋଚନା   କଣିତ ?

[ ଚନ୍ଦ୍ରମଣି ଚମକି ଚାହିଁ, ସୁଲୋଚନାଙ୍କୁ ଦେଖି ଭୀଷଣ ରାଗ ଅଭିମାନରେ ମୁହଁ ବୁଲାଇ ନେଲେ । ସୁଲୋଚନା ଟିକିଏ ମୁରୁକିହସି ଝରକା ପାଖରୁ ଅପସରିଗଲେ । ବାବୁ କହିଲେ

କଣେଇ ଖୁଣ୍ଟି ଦେଖିରେ, ସୁଲୋଚନା ନାହାନ୍ତି । ତା'ପରେ ଝରକା ଆଡ଼କୁ ବେଶ୍ ଦମ୍ଭରେ ଖୁଣ୍ଟି ରହିଲେ—ରାଗ ଓ କ୍ଷୋଭ ଆହୁରି ବଢ଼ିଯାଉଚି···ଠିକ୍ ଏ ପରେ ଘରର ଦରଜା ଅଳ୍ପ ଖୋଲି ସୁଲୋଚନା ଆସି କବାଟ ଫାଙ୍କରେ ଠିଆ ହେଲେ । ବାବୁଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ ନାହିଁ ]

ସୁଲୋଚନା : ବସିଚ ?···ବସିଚନ୍ତି ?

ଚନ୍ଦ୍ରମଣି : (କ୍ରୋଧ) ହଁ ବସିଛି ।···ବସିଚ ମାନେ ଏମିତି ଏକ ମନ ଏକ ଧ୍ୟାନରେ ଚକାମାଡ଼ି ବସିଚ ।

ସୁଲୋଚନା : କାହିଁ, ନାହିଁ ତ । ଏଇନେ ହେଇ ଗୋଡ଼ ଟେକ ବସିଚ !

ଚନ୍ଦ୍ରମଣି : ତା' ବ ନୁହେଁ ? କହିଲି ବୋଲି କ'ଣ ସବୁବେଳେ ଖାଲି ଚକାମାଡ଼ି ବସିଥିବ—ଠିକ୍ ଏ ଗୋଡ଼ ଟେକ ବସିବ ନାହିଁ । ହଉ ହେଲା । ( କାନ୍ଦ କାନ୍ଦ ହେଇ ) ହୁକୁମ୍ ତ କରିଚ— ଦ' ମାସ ହେଇଗଲା ଘରୁ ଗୋଡ଼ କାଢ଼ି କୁଆଡ଼େ ଯାଇ-ନାହିଁ । ତେମେ ସ୍ତ୍ରୀ—ମୁଁ ସ୍ୱାମୀ, ତମ ନାଁ ସୁଲୋଚନା, ମୋ ନାଁ ଚନ୍ଦ୍ରମଣି । ତେମେ ଏ ଘରର ସାଆନ୍ତାଣୀ ମୁଁ, ବାବୁ ! ଏ ସବୁକୁ ମୁଁ ଆଡ଼େଇ ଦେଇ ତେମେ ଯାହା ହୁକୁମ୍ କରୁଚ, ମୁଁ ତାକୁ ତାମିଲ କରୁଚ । ଏଇ ଦେଖ, ଏ ଚକାମାଡ଼ି ବସିଲି । ଆଉ ଗୋଡ଼ ଟେକା ନୁହେଁ, ଚକା—ଚକାମାଡ଼ି ବସିଲି । [ ଚକାମାଡ଼ି ବସି ରାଗରେ ଝରକା ଆଡ଼କୁ ମୁହଁ ବୁଲେଇ ନେଲେ । ଏଇ ଅବସରରେ ସୁଲୋଚନା—ସେଠୁ ତାଙ୍କ ଅଲକ୍ଷ୍ୟରେ ଚାଲିଗଲେଣି ]

ଚନ୍ଦ୍ରମଣି : ସେଠି କବାଟ ପାଖରେ ଠିଆହେଇ ରହିଲ କାହିଁକି ? ଭିତରକୁ ଆସ । କଥାଟା ଏବେ ପଡ଼ୁ । (ଦେଖି) ଓ, ଚାଲି-ଗଲଣି ! ହଉ ଯାଅ । ତେମେ କ'ଣ ଭାବିଚ ତେମେ ଏଠି ନାହଁ ବୋଲି ମୁଁ ଝରକା କବାଟ ଫାଙ୍କରେ ଯାଇ ଏଣିକି

ଚେଣିକ ଉଣ୍ଡିବ ' ନା, ମୁଁ ଜମିଦାର ପିଲ, ମୋ ମନ ଯାହା ଭୁଞ୍ଜିବ ମୁଁ ତା କରିବ ।...ଏଇ ମୋ ମନ ଭୁଞ୍ଜିଲଣି ମୁଁ ଏଠି ବସି ବସି ଗୀତଟିଏ ଗାଇବ । ଏଇ ଗାଇଲ—

-ଗୀତ-

ଚନ୍ଦ୍ରମଣି :

ମୁଁ, ବାବୁ ହେଇ ଯେବେ     ବାବୁ କଲ ମତେ
ମୋ ଘରେ ମୋହର ଭାରିଯା
ଚନ୍ଦ୍ରମଣି ଭୁ ମରିଯା । ୦ ।

ବସିଥିଲ ଯେବେ ଭନେ
ବେଦୀରେ ହେଇ ମୁଁ ବର
ବରର ହୁକୁମ କେତେ
ବରର କେତେ ଖାତର !!

ଦାନ୍ତ ନିକୁଟି ତା' ବାପ
କରିଥିଲ କନ୍ୟାଦାନ
କିଏ ବା ନଜାଣେ କୁହ
ବର ଶ୍ରେଷ୍ଠ କନ୍ୟା ନ୍ୟୂନ ।

ଆଜ ସେଇ କନ୍ୟା, ମୋହର ଭାରିଯା
ମୋହ ଘରେ ମତେ ହୁକୁମ କରୁଛ
ବସିଯା     ଉଠିଯା
ଚୁଲିଯା     ରହିଯା
ଏଇତ ନମୁନା     ଏଇମାନେ ହେଲେ
ଗୋଟିଏ ଗୋଟିଏ ଭାରିଯା
ଭଧାତାରେ, ଭୁ ମରିଯା । ୧ ।

[ ଏଇ ଗୀତରେ ବାବୁ ଯେପରି ନିଜ ମନ କଥା ସବୁ କହିପକାଇଲେ । ମୁହଁ ତଳକୁ କରି ଆଖି ପୋଛିଲେ । ଆସିଲେ ସାଆନ୍ତାଣୀ ସୁଲୋଚନା, ହାତରେ ଗୋଟିଏ ବଡ଼ ରୁପା ଗ୍ଲାସ୍, ତାଙ୍କୁ ଦେଖି ବାବୁଙ୍କ ମୁହଁରେ ଅତି ବିକଳ ଭାବ ଫୁଟି ଉଠିଲା ]

ସୁଲୋଚନା : ଏଠି ଗୀତ କିଏ ଗାଉଥିଲା କି ? ତେମେ ଆଜିକାଲି ଆଉ ଗୀତ ଫିତ ଗାଉନ ସବୁ ?···ମତେ ଯେମିତି ଜଣା ପଡ଼ିଲା ଯୋଗୀ ବିକଳ ହୋଇ ଗୋବିନ୍ଦଚନ୍ଦ୍ର ଗୀତ ବୋଲୁଚି । ହେଲେ ଯୋଗୀ ହୋଇଥିଲେ ତ ଦାଣ୍ଡ ପଟରେ ବୋଲୁଥା'ନ୍ତା ।

ଚନ୍ଦ୍ରମଣି : (ଆଗ୍ରହରେ) ଦାଣ୍ଡପଟ ! ! ମାନେ ଏଇ ସଦର ଦରଜା ଖୋଲି ରାସ୍ତା ଉପରକୁ···

ସୁଲୋଚନା : (ତେଜହୁଡି) କାହିଁକି ? ଦାଣ୍ଡପଟ କଥା ଶୁଣି ଏମିତି ଉଲୁସି ଉଠୁଚ କାହିଁକି ? ସଦର ଦରଜା କଥା ତମ ପାଟିକି କାହିଁକି ଆସିଲା ? ଯିବ କି ଦାଣ୍ଡପଟକୁ ? ଯାଉନ । ସଦର ଦରଜା ଖୋଲୁନ । ଘର ଭିତରେ ତମକୁ କିଏ କଞ୍ଚି କୋଲପ ପକେଇ ରଖିଚି କି ?

[ ଏ କଥାରେ ବାବୁ ଛାଙ୍କିପଡ଼ିଲେ ]

ଚନ୍ଦ୍ରମଣି : କଞ୍ଚି କୋଲପ ଆଉ ଅଧିକ କ'ଣ ? ଯୋଉ ହୁକୁମ ଜାରି କରିଚ !

ସୁଲୋଚନା : ଜାଣିଚ ତ, ଏମିତି ହୁଁ ହୁଁ ହଉଚ କିଆଁ ? (ଗ୍ଲାସ ବଢ଼ାଇ) ନିଅ, ପିଇଦିଅ ।

ଚନ୍ଦ୍ରମଣି : (ଅଭିମାନ) ନା ।

ସୁଲୋଚନା : ସର୍ବତ ।

ଚନ୍ଦ୍ରମଣି : ଜାଣେ ।

ସୁଲୋଚନା : ଗିଲସ ତ ମୋ ହାତରେ, ତେବେ ଜାଣିଲ କେମିତି ? ଏଁ, କେମିତି ଜାଣିଲ ?

ଚନ୍ଦ୍ରମଣି : (ଦୀର୍ଘଶ୍ୱାସ) ଜାଣେ ।

ସୁଲୋଚନା : ବୁଝିଲି । ବୁଝିଗଲି । ହାତରେ ତ ମୋର ଠିପିବନ୍ଧା ଚେପ୍‌ଟା ବୋତଲ ନାହିଁ, ଅଛି ରୂପା ଗିଲସ । ସେଇଥିରୁ ଜାଣିଲ ଯେ ଏଇଟା ତମ ପିଇବା ଜନିଷ ନୁହେଁ, ସର୍‌ବତ ।···ହଉ ନିଅ । ନଡ଼ିଆ କଞ୍ଚା କ୍ଷୀର, ନବାତ, ବାଦାମ, ପିସ୍ତା ଆଉ ମୋନାକ ସର୍‌ବତ । ପି' ଦିଅ ।

[ପାଖରେ ବସି ଗିଲସ ବାବୁଙ୍କ ମୁହଁ ପାଖକୁ ଉଠାଇଲେ]

ଚନ୍ଦ୍ରମଣି : (ପିଲଙ୍କ ପରି) ନାଇଁ,ନାଇଁ-ନାଇଁ ନାଇଁ -- ମୁଁ ପିଇବି ନାହିଁ, ମତେ ବାନ୍ତି ମାଡ଼ିବ ।

[ ସାଆନ୍ତାଣୀ ପୁଣି ତେଜି ଉଠିଲେ ]

ସୁଲୋଚନା : କ'ଣ ହେଲା ! ବାନ୍ତି ମାଡ଼ିବ ? ବୁଝିଲି, ସେ ଯୋଉ ନିଆଁ ପାଉଁଶ ନିଶାପାଣି ଗୁଡ଼ାକ ଗିଳି ଝିଲକା ଝିଲକା ବାନ୍ତି ହଉଥିଲା, ଦ'ମାସ ହେଲା ଏ ଘରେ ଅଟକ ପଡ଼ି ସେ ବାନ୍ତି ସିନା ନାହିଁ, ହେଲେ ଗୁଡ଼ିତ ଉତରଟା କ'ଣ ସୁଧୁରିଲାଣି ? ଗୋପୀ କବିରାଜଙ୍କ ନିଦାନମତେ ଏ ସର୍ବତ ତିଆରି କରିଛି, ଭଲରେ କହୁଚି ପିଇଦିଅ ।

[ ଏକରକମ ଜୋର୍‌କରି ପିଆଇ ଦେଇ ସୁଲୋଚନା ସଗର୍ବରେ ଚାଲିଗଲେ । ଏତେ ଚମତ୍କାର ସରବତ ପିଇ ମଧ୍ୟ ବାବୁଙ୍କ ବିକଳଭାବ ସହିତ ରାଗ ଓ କ୍ଷୋଭ ବଢ଼ିଗଲା । ସେ ପଲଙ୍କ ଉପରେ ଗଡ଼ି ପଡ଼ିଲେ । ଝରକା ଫାଙ୍କରେ ଦେଖାଗଲା ବାବୁଙ୍କ ଭୃତ୍ୟ ମକର ସେପଟେ ଚାଲିଯାଉଚି । ସେ ଉଠି ବସିଲେ ]

ଚନ୍ଦ୍ରମଣି : (ଡାକଲେ) ମକର···ମକର···ମକର···

[ ମକର ଝରକା ପାଖରୁ ଆସି ବାବୁଙ୍କ ନ ଶୁଣି ହାତ ପାପୁଲିରେ ନାସ୍ତିସୂଚକ ଇଙ୍ଗିତ କରି ଚାଲିଯାଉଥିଲା ]

ଚନ୍ଦ୍ରମଣି : (ଜୋର୍‌ରେ) ମକର···(କୁଣ୍ଠିତ ପଦରେ ମକର ଆସି ଝରକା ସେ ପାଖରେ ଠିଆହେଲା)

ଚନ୍ଦ୍ରମଣି : ସେଠି ନୁହେଁ, ଘର ଭିତରକୁ ଆ ।

ମକର : (ବଳରେ) ନାଇଁ ।

ଚନ୍ଦ୍ରମଣି : ପାଜି, ନିମକହାରାମ୍ , ଫଟେ ମହମ୍ମଦ !

ମକର : ସା'ନ୍ତାଣୀ ପରା ମନାକରିଚନ୍ତି ।

ଚନ୍ଦ୍ରମଣି : କ'ଣ ମନା କରିଚନ୍ତି ?

ମକର : କିଛି କାମ ନ ଥିଲେ ଏ ଘର ଭିତରକୁ ମୁଁ ଯିବିନାହିଁ ।

ଚନ୍ଦ୍ରମଣି : କାମ ଅଛି । ଆ ।

ମକର : କି କାମ ?

ଚନ୍ଦ୍ରମଣି : ଷ୍ଟୁପିଡ୍, ଡଫର, ଫୁଲ୍, ତୁ ମୋ'ଠୁ କାମର ହିସାବ ନେବୁ !

ମକର : ସା'ନ୍ତାଣୀ ପରା ସେଇକଥା କହିଚନ୍ତି ।

ଚନ୍ଦ୍ରମଣି : କହିଚନ୍ତି !

ମକର : ଆଜ୍ଞା ।

ଚନ୍ଦ୍ରମଣି : ମାରିଦେଲା—ମୋ ଚଣ୍ଡିଚପି ମତେ ମାରିଦେଲା ।···ହଉ ଆ, ମତେ ପଙ୍ଖା କରିବୁ ଆ ।

ମକର : (ଖୁବ୍ ଖୁସିରେ) କେଡ଼େ ଖୁସିର କଥା ! ଆପଣଙ୍କୁ ପଙ୍ଖା କରିବି, କେଡେ ଖୁସିର କଥା ।

[ମକର ଚାଲିଯାଉଥିଲା]

ଚନ୍ଦ୍ରମଣି : ହେ···ଇ ! କୁଆଡ଼େ ତେଣେ ଗୁଲଯାଉଚୁ ?

ମକର : ପଙ୍ଖାଟା ଆଣେ ।

ଚନ୍ଦ୍ରମଣି : ପଙ୍ଖା ଏଇ ଘରେ ଅଛି ।

ମକର : ସା'ନ୍ତାଣୀ ପର ମନା କରିଚନ୍ତି ।

ଚନ୍ଦ୍ରମଣି : ଆଉ କ ମନା କରିଚନ୍ତି ?

ମକର : କହିଚନ୍ତି, ଆପଣଙ୍କୁ ତେଲ ମାଲିସ୍ କରିବ ତ ସା'ନ୍ତାଣୀ ନିଜ ହାତରେ ତେଲ ଦେବେ---ପଙ୍ଖା କଲେ ତାଙ୍କରୁଁ ପଙ୍ଖା ଆଣିବ ।

ଚନ୍ଦ୍ରମଣି : କାହିଁକି ରେ ?

ମକର : ତା'ହେଲେ ମା ସା'ନ୍ତାଣୀ ନିଜେ ଆସି ତନଖି ଦେଖିବେ ମୁଁ ସତରେ ଆପଣଙ୍କ ସେବା କରୁଚି କି ଆପଣ ମତେ ଫୁସୁଲେଇ ଡାକି ମୋ ସାଙ୍ଗରେ କ'ଣ ଫୁସର୍‌ଫାସର୍ ହଉଚନ୍ତି !···ପଙ୍ଖାଟା ଆଣୁଚି ଆଜ୍ଞା···

ଚନ୍ଦ୍ରମଣି : ନାଇଁରେ ଥାଉ । ମତେ କ'ଣ ସତରେ ଗରମ ହଉଚି ? ଛ' ମାସ କାଳ ଏ ଘରଟା ଭିତରେ ପଡ଼ି ପଡ଼ି ତୋ ସା'ନ୍ତାଣୀଙ୍କ ଡରରେ ମତେ ତ ସନ୍ନିପାତ ଘୋଟିଆସୁଚି··· ତୁ ତ ଦେଖୁଚୁ ମକର···

ମକର : ଆଜ୍ଞା ।

ଚନ୍ଦ୍ରମଣି : ଛ' ମାସ ହେଲା ଘରର ସଦର ଦରଜା ମୁଁ ଦେଖିନି ।

ମକର : ହଇ ଆଜ୍ଞା ।

ଚନ୍ଦ୍ରମଣି : ମଣିଷର ମୁହଁ ଯାହା, ଘରର ସଦର ଦରଜା ସେଇଆ । ସଦର ଦରଜା ଯଦି ନ ଦେଖିଲି, ଆଉ ଦେଖିଲି କ'ଣ ?

ମକର : ସତ ଆଜ୍ଞା, ଆଜ କଛୁ ଦେଖିଲେ ନାହିଁ ।
ଚନ୍ଦ୍ରମଣି ଏଇ ଦେଖ୍ । ତୁ ସେଠି ଠିଆହେଉଚୁ, ମୁଁ ଏଠି ତୋ ଆଡ଼କୁ ମୁହଁ ପଛକର ଠିଆହେଲି ।

[ଝଟକୁ ଓହ୍ଲାଇ ଯାଇ ମକର ଆଡ଼କୁ ପିଠିକର ଠିଆ ହେଲେ । ମକର ତୋକାଙ୍କ ପର ଗୁହିଁ ରହିଥାଏ]

ଚନ୍ଦ୍ରମଣି : କହିଲୁ ଦେଖି, ମୋ ମୁହଁ ନ ଦେଖି ତୋ ମନ କ'ଣ ହେଇଯାଉଚ ?
ମକର : ପିଚା ।

[ ବାବୁ ସେଇପର ମୁହଁ ପଛକର ଠିଆ ହେଇ କହୁ ଗୁଲଥା'ନ୍ତି ]

ଚନ୍ଦ୍ରମଣି : ସେଇ କଥା । ଢ଼' ମାସ ହେଲା ସଦର ଦରଜା ମୁହଁ ନ ଦେଖି ମୋ ମନ ସେମିତ ପିଚା ହେଇଗଲାଣି ।

ମକର : ହେଇଥିବ ହଜୁର ।

ଚନ୍ଦ୍ରମଣି : (ଭବାବିଷ୍ଟ ହୋଇ) ସଦର ଦରଜାକୁ ଯା'ନ୍ତି—ଧୀରେ ଦରଜା ଖୋଲି ଆ···ସ୍ତେ ରାସ୍ତାକୁ ଓହ୍ଲାଇ ପଡ଼ନ୍ତି !···କଟକ ସହର ଇଏ, କେତେ ଆଡ଼କୁ କେତେ ରାସ୍ତାପଡ଼ିଚ···

[ଏତିକିବେଳେ ସୁଲୋଚନା ଝରକା ପାଖକୁ ଆସି ମକରର ଅଲକ୍ଷ୍ୟରେ ଠିଆହେଲେ । ସେ ବାବୁଙ୍କ କଥା ଶୁଣିଚନ୍ତି । ମକର ଅତ ଯତ୍ନ ସହିତରେ ବାବୁଙ୍କୁ କିଛୁ ନ କହି ସେଠୁ ଖସି ଗୁଲଗଲା । ସୁଲୋଚନା ଝରକା ପାଖରେ ଠିଆହେଇ ବାବୁଙ୍କ କଥା ଶୁଣୁଚନ୍ତି । ବାବୁ ସେମିତ ଝରକା ଆଡ଼କୁ ପଛକରି ଠିଆହେଇ କହୁ ଗୁଲଥା'ନ୍ତି··· ]

ଚନ୍ଦ୍ରମଣି : ହିଁରେ ମକର, ଏ ରାସ୍ତାରୁ ସେ ରାସ୍ତା—ଏ ଗଳିରୁ ସେ ଗଳି—ଏମିତ ଯାଇ ଯାଇ, ଯାଇ ଯାଇ, ଶେଷକୁ ଯାଇ

ପଦ୍ମଅନ୍ତୁ—ଜାଣିଚୁରେ ମକଗ କୋଉଠି ଯାଇ ପଦ୍ମଅନ୍ତୁ !
[କଳ୍ପିତ ଆନନ୍ଦରେ ମୁହଁ ତାଙ୍କର ଝଲସି ଉଠୁଥାଏ]
ଇସ୍, ଖୁସିରେ ମୋ ପାଟିରୁ ଆଉ ବଚନ ବାହାରୁନି...
ବଚନ ବାହାରୁନି...ବଚନ ବାହାରୁନି, ମୁଁ ପଦ୍ମଅଥା'ନ୍ତି...
ତୁ ଜାଣିଚୁ ମକଗ ମୁଁ କୋଉଠି ପଦ୍ମଅଥା'ନ୍ତି !

ସୁଲୋଚନା : ମୁଁ ଜାଣିଚି ।

[ବାବୁ ଚମକ ପଡ଼ି ସ୍ତବ୍ଧ ଘା'ନ୍ଧାଣୀଙ୍କୁ ଦେଖି ସ୍ତମ୍ଭୀଭୂତ ହୋଇପଡ଼ିଲେ । ସଙ୍ଗେ ସଙ୍ଗେ ପଲଙ୍କ ଉପରକୁ ଉଠିଯାଇ ଚକାମାଡ଼ି ବସିଲେ ]

ଚନ୍ଦ୍ରମଣି : କ'ଣ ଜାଣିଚ ?

ସୁଲୋଚନା : ଯୋଉଠିକି ତେମେ ଯାଇ ପାରିବ ନାହିଁ ବୋଲି ଦ'ମାସ ହେଲା ଏ ଘରେ ଅଟକବନ୍ଦୀ ହୋଇ ରହିଚ, ଠିକ୍ ସେଇ କଥାଟି—ସେଇ ତେଲେଙ୍ଗାବଜାର ଉସ୍ମାନ୍ ଚାଉ ଘରକୁ ପୁଣି ଯିବା କଥା ତେମେ ପ୍ରାଣ ଖୋଲକରେ ମକଗକୁ କହିବାକୁ ଯାଉଥିଲ, ଏଇଆ ନା ?

ଚନ୍ଦ୍ରମଣି : (କିଛି ନ କହି ମୁହଁ ବୁଲେଇ ନେଲେ )

ସୁଲୋଚନା : ବୁଝିଲି, ସତକଥାଟା କହିଲି ବୋଲି ପାଟିରୁ ବଚନ ବାହାରୁନି । ମକଗକୁ ମୁହଁ ପଛକରି କାହିଁକି ଠିଆ ହୋଇଥିଲ ?

ଚନ୍ଦ୍ରମଣି : ଏ ମୁହଁ ଆଉ ଅଛି ଯେ କାହାକୁ ଦେଖେଇବି ।

ସୁଲୋଚନା : ମୁହଁ ଗଲା କୁଆଡ଼େ ?

ଚନ୍ଦ୍ରମଣି : ତମେ ସ୍ତ୍ରୀ ମୁଁ ସ୍ବାମୀ । ତେମେ ହୁକୁମ୍ କରିଛ, ମୁଁ...

ସୁଲୋଚନା : ଓହୋ ! ଏଇକଥାଟା ତ ହଜାର ଥର କହିଲଣି । ହେଲେ କାହିଁକି ଏମିତି ହେଲା, ଟିକେ ସତକଥା ଶୁଣ ।

ଚନ୍ଦ୍ରମଣି : ଭବିଷ୍ୟ ? ପଚ୍ଛକଥା ?

ସୁଲୋଚନା : ହଁ ପଚ୍ଛକଥା । କାହିଁକି ଏମିତି ହେଲା ? ସବୁଦିନେ ତ ଏ ଢଙ୍ଗ ନ ଥିଲା ! ଜମିଦାର ଘରର ପୁଅ ତମେ—ଘୋଡ଼ା ଚଢ଼ୁଥିଲ—ଗାଡ଼ିରେ ବୁଲୁଥିଲ—କେତେ ହୁକୁମତି—କେତେ ଖାତିର । ଆଜ ମୁଁ କି'ଣ ହୁକୁମ୍ ଜାହିର୍ କଲି ଆଉ ତେମେ କାହିଁକି ମୋ ହୁକୁମ୍ ମାନି ଦ'ମାସ ହେଲା ଏ ଘରଟି ଭିତରେ ପଡ଼ିରହିଚ ? ତମ ଗୁଣଗାରିମା ତ କହୁଛି ତମ ଘର ଘର କାନ୍ଥରେ ବାନ୍ଧି ହେଇ ପଡ଼ିନ, ଦାଣ୍ଡରେ ପଡ଼ି ହାଟରେ ଗଡ଼ୁଚି । ଯାହା ତେମେ ନିଜ ଆଖିରେ ଦେଖିଚ କାନରେ ଶୁଣିଚ ଆଉ ଅଙ୍ଗେ ନିଭେଇଚ, ସେଇ ପଚ୍ଛକଥା ସବୁ ବସି ବସି ଭାବ । ସୁଫଳ ମିଳିବ ।

[ସା'ନ୍ତାଣୀ ଗ୍ଲଲଗଲେ । ବାବୁ କଟୁକ୍ଷଣ ଅବୋଧଙ୍କ ଭଳି ବସି ରହିଲେ ]

ଚନ୍ଦ୍ରମଣି : (ବିରକ୍ତ) ହୁଁଃ ! ପଚ୍ଛକଥା ସବୁ ଭାବିବ ! ଖାଲି କହିଦେଲେ ହେଲା !···କ'ଣ ଭାବିବ ? କୋଉଠୁ ଭାବିବ ? ସୂତାଖିଅ ତ କାହିଁ କେତେ ଦୂରରେ—କୋଉଠୁ ଭାବିବ···କୋଉଠୁ କୋଉଠୁ ? (ଟିକେ ଚୁପ୍) ହଁ ତ, ଏଇ ଆଖି ଆଗରେ ଭାସିଉଠୁଚି ସେଦିନର ସେଇ କଥା—ଆମ ଗାଁ ବସ୍ତୁପୁର—ସେଦିନ, ଆମ ଗାଁ ବସ୍ତୁପୁର—ମୋ ବାପା ଜମିଦାର ଶ୍ୟାମ ପଟ୍ଟନାୟକ—ଆମ ଗାଁ ଦାଣ୍ଡରେ ଆମରି ଦୋଳ ମେଲଣ—ଆମ ଜମିଦାର ବଂଶର ଦୋଳ ମେଲଣ—ମୁଁ କଟକରେ ଥାଏ, ଘରେ ନୂଆବୋହୂ ସୁଲୋଚନା—ହଁ ମୋର ଏଇ ସ୍ତ୍ରୀ ସୁଲୋଚନା—ତା' ପାଇଁ ପାଞ୍ଚସରିଆ ସୋରିଷିଆ ହାର ନେଇ ମୋର ଘରକୁ ଯିବାର କଥା··· ମୋର ଘରକୁ ଯିବାର କଥା···ହଁ, ମୋର ଘରକୁ ଯିବାର କଥା···

[କ୍ରମେ ତାଙ୍କର ସ୍ୱର କ୍ଷୀଣ ହୋଇ ବନ୍ଦ ହୋଇଗଲା ]

## ଚନ୍ଦ୍ରମଣି ବାବୁଙ୍କ ସ୍ମୃତିଚାରଣ

[ବିଷ୍ଣୁପୁର ଗ୍ରାମ । ଚନ୍ଦ୍ରମଣି ବାବୁଙ୍କ ପିତା ଜମିଦାର ଶ୍ୟାମ ପଟ୍ଟନାୟକଙ୍କ ବାସଭବନ । ଜମିଦାର ଏକାକୀ ବସିଛନ୍ତି । ସମୟ ମଧ୍ୟାହ୍ନ । ସେଦିନ ଜମିଦାରଙ୍କ ଦୋଳ ମେଳଣ । ଜମିଦାରଙ୍କ ପରିଧାନ—ପଟ୍ଟବସ୍ତ୍ର, ମୂଲ୍ୟବାନ୍ ଗଳାବନ୍ଧ ପଶମକୋଟ୍ ଓ କାନ୍ଧରେ ଉତ୍ତରୀୟ । ଜମିଦାର ଏକାକୀ ବସିଛନ୍ତି । ପୂଜକ ଆସିଲେ । କିଛି ଦୂରରୁ ଦୋଳ ମେଳଣରେ ବାଦ୍ୟ ବାଜଣା ଅସ୍ପଷ୍ଟ ଭାବେ ଶୁଣାଯାଉଛି ]

ଶ୍ୟାମ : ଆସ ମିଶ୍ରେ ।···ଆଚ୍ଛା ମିଶ୍ରେ, ତମେ କହିପାରିବ ଆମର ଏ ଦୋଳଯାତ୍ରା କେବେ କେଉଁ ସନ ଆରମ୍ଭ ହୋଇଥିଲା ?

ମିଶ୍ର : ସେମିତି ତ କହିହେବ ନାହିଁ । ଆପଣଙ୍କ ଜେଜେବାପା ଜମିଦାର ମାଧବ ପଟ୍ଟନାୟକ ଏ ମେଳଣ ଆରମ୍ଭ କରିଥିଲେ ।

ଶ୍ୟାମ : ହଁ, ଜେଜେବାପା ଏ ମେଳଣ ଆରମ୍ଭ କରିଥିଲେ । ଆଜକୁ ଠିକ୍ ଶହେ ବର୍ଷ ତଳେ ।

ମିଶ୍ର : ଶହେ ବର୍ଷ ତଳେ !

ଶ୍ୟାମ : ହଁ ଏବେ ଶହେ ବର୍ଷ ପୂରିଲା । ବର୍ତ୍ତମାନ ତ ଊଣେଇଶ ଶହ ପାଞ୍ଚ ମସିହା ଚାଲିଛି—ସନ ଅଠରଶହ ଅଠାନବେ ।··· (କାନପାରି) ଇଏ କୋଉ ଦୋଳ ଆସିଲା ?

ମିଶ୍ର : ବଳେପୁର୍ ରାଧାବଲ୍ଲଭ । ଏଥର ଏକା ଭାରି ଜାକଜମକରେ ସେ ଆସୁଛନ୍ତି ।

ଶ୍ୟାମ : ଖାଲି ରାଧାବଲ୍ଲଭ ନୁହନ୍ତି, ସବୁ ଷୋଳ ବିମାନ ଏଥରକ ଏମିତି ଜାକଜମକରେ ଆସିବା ପାଇଁ ମୁଁ ସେମାନଙ୍କୁ ନିମନ୍ତ୍ରଣ ଜଣାଇଛି । ତମେ ନିଜେ ତ କେତେ ଦୋଳଙ୍କୁ ଯାଇ ନିମନ୍ତ୍ରଣ କରିଆସିଛ ।

ମିଶ୍ର : ହଁ ଆଜ୍ଞା ମୁଁ ଯାଇଚ । ମାଝକ ମେଳଣ ଶହେ ବର୍ଷ ପୂରିଗଲା ବୋଲି କ'ଣ ଏ ଜାକଜମକ କମନ୍ତଣ ?

ଶ୍ୟାମ : ଠିକ୍ । ଶହେ ବର୍ଷ ପୂରିଗଲା । କେଡ଼େ ଝୁସିର କଥା । ଏମିତି ତ ଆମ ଏ ଅଞ୍ଚଳରେ କେତେ ମେଲଣ ହେଇ କେତେ ବନ୍ଦ ହେଇଗଲାଣି । ଆମ ମେଲଣ ଶହେ ବର୍ଷ ପୂରିଲା । ଏଇ ଝୁସିରେ ଏ ବର୍ଷଠୁଁ ଢମ ସାନ ସାଆନ୍ତ— ସାନ ଜମିଦାର ମୋ ପୁଅ ଚନ୍ଦ୍ରମଣି ପଟ୍ଟନାୟକ ମେଲଣ ଶିରପା ଆଉ ଫୁଲ ଚନ୍ଦନ ଅବିର ସେବା କରିବେ ।

ମିଶ୍ର : ସତ କହୁଚନ୍ତ ଆଜ୍ଞା ଏଣିକି ଆପଣ ଆଉ ଶିରପା ନେବେନ ?

ଶ୍ୟାମ : ନା, ଶହେବର୍ଷର ମେଲଣ ଏ । ମୁଁ ବଞ୍ଚି ଥାଉଁ ଥାଉଁ ଏ ଜମିଦାର ବଂଶର ଗୌରବ ଏ ମେଲଣକୁ ଚନ୍ଦ୍ର ହାତରେ ଟେକି ଦେବି । ଦେଖିବ ଏଥିରେ ପ୍ରଜା ପାଟକ ବନ୍ଧୁ ବାନ୍ଧବ ସମସ୍ତେ ଖୁସି ହେବେ ।

ମିଶ୍ର : ଏକଥା ଆଉ କହିବାକୁ ଅଛି ଆଜ୍ଞା । ଏବେଠୁ ସମସ୍ତେ ଏକଥା କୁହାକୁହି ହେଲେଣି । ଆଜି ତ ସାନବାବୁ କଟକରୁ ଆସୁଚନ୍ତି...

ଶ୍ୟାମ : ହଁ । (ଗ୍ରନ୍ଥ ପକେଟରୁ ଘଣ୍ଟାକାଢ଼ି ଦେଖି) ନ'ଟା ବାଜିବ, ବେଳ ହେଇଗଲା ।

ମିଶ୍ର : ସାନବାବୁଙ୍କ ଆସିବା ବେଳ ?

ଶ୍ୟାମ : ହଁ, ରେଲଷ୍ଟେସନକୁ ଗାଡ଼ି ଯାଇଚ ।

[ ଜଣେ ଭୃତ୍ୟ ଆସିଲା ]

ଭୃତ୍ୟ : ଗାଡ଼ି ଆସିଲାଣି ସାଆନ୍ତେ ।

ଶ୍ୟାମ : ଆସିଗଲେଣି ?

ଭୃତ୍ୟ : ଆଜ୍ଞା, ଗାଁ ମୁଣ୍ଡରୁ ଦେଖିଲି ନାଲି ସେପାରି ଶଗଡ଼ଗୁଳାରେ ଗାଡ଼ି ଆସୁଛି ।

ଶ୍ୟାମ : ମୁଁ କହୁଥିଲି ପରା ବେଳ ହୋଇଗଲାଣି (ଭୃତ୍ୟକୁ) ଶୁଣ୍, ଚନ୍ଦଣେ ରାଧାବଲ୍ଲଭଙ୍କ ବିମାନ ତ ପହଞ୍ଚି ଆର କରି ଆସୁଛନ୍ତି । ଏଠି ମେଲଣ ପଡ଼ିଆରେ ଠାକୁରମାନେ ବଜେ ହୋଇ-ଗଲେଣି । ତୁ ଯା' ସାନ ସା'ନ୍ତ କୁ କହିବୁ ଗାଁ ମୁଣ୍ଡରେ ଗାଡ଼ି ଅଟକେଇ ଚାଲି ଚାଲି ଆସିବେ । ପାଦରୁ ଜୋତା କାଢ଼ିଦେଇ ଖାଲି ପାଦରେ ଆସିବେ, ବୁଝିଲୁ ?

ଭୃତ୍ୟ : ଆଜ୍ଞା । (ଭୃତ୍ୟ ଚାଲିଗଲା)

ମିଶ୍ର : ମୁଁ ଯାଉଛି ଆଜ୍ଞା ।

ଶ୍ୟାମ : ହଁ ତୁମେ ଯାଅ ମିଶ୍ରେ । ମୁଁ ଟିକେ କଚେରୀ ଆଡ଼ୁ ଆସେ ।

[ ଦୁହିଁଙ୍କ ପ୍ରସ୍ଥାନ । ଟିକଏ ପରେ ଜମିଦାରଙ୍କ ଉଆସର ଜଣେ ଦାସୀ ସନ୍ତର୍ପଣରେ ଘର ଭିତରକୁ ଆସି ବାହାରକୁ ଲକ୍ଷ୍ୟ କଲା । ତା'ପରେ ଖୁବ୍ ଖୁସି ମନରେ ଭିତର ଅଗଣାକୁ ଯାଇ ଜମିଦାର-ବଧୂ ସୁଲୋଚନାଙ୍କ ହାତ ଧରି ଧରି ପୁଣି ଘର ଭିତରକୁ ଆସିଲା । ସୁଲୋଚନା ଧୀର ପଦରେ ଆସୁଥା'ନ୍ତି ]

ଦାସୀ : ଏଇ ଦେଖ ସା'ନ୍ତାଣୀ, ଏଠି କେତେ ଲୁଆଡ଼େ ନାହାଁନ୍ତି, ଦେଖ ।

ସୁଲୋଚନା : କ'ଣ ଦେଖିବି ?

ଦାସୀ : ହେଇ ପରା, ଢୋଲ ସବୁ ଆସି ଏଠି ଧାଡ଼ି ବାନ୍ଧି ବସିଗଲେଣି । ହଁ ସା'ନ୍ତାଣୀ, ଗାଡ଼ି ଆସିଲାଣି ।

ସୁଲୋଚନା : ଗାଡ଼ି !

ଦାସୀ : ଆମ ସାନ ସା'ନ୍ତଙ୍କୁ ଆଣିବାପାଇଁ ରେଲଷ୍ଟେସନକୁ ଗାଡ଼ି ଯାଇଥିଲା ତ, ଗାଡ଼ି ଆସିଲାଣି (ସା'ନ୍ତାଣୀ ଯେମିତି ଟିକେ ଚଞ୍ଚଳ ହୋଇ ଉଠିଲେ । ଦାସୀ କହୁଚାଲିଚି) ସା'ନ୍ତାଣୀ ଆଜିପରା ଦିନରେ ତମେ ଇଏ କି ଶାଢ଼ୀ ପିନ୍ଧିଚ !

ସୁଲୋଚନା : ପାଟଶାଢ଼ୀ ପିନ୍ଧିଚି ତ ।

ଦାସୀ : କି ପାଟ ଇଏ ? ବିଷ୍ଣୁପୁରୀ । ତମ ବାକ୍ସରେ କ'ଣ ବରମପୁରୀ ବନାରସୀ ପାଟ ନାହିଁ ଯେ ତମେ ବିଷ୍ଣୁପୁରୀ ପାଟ ପିନ୍ଧିବ ?

ସୁଲୋଚନା : (ହସି) ଆଚ୍ଛା ଆଚ୍ଛା ହେଲା, ମୁଁ ବରମପୁରୀ ପିନ୍ଧିବି ।

ଦାସୀ : ସେଇ କଥା ! ଆଜିପରା ଦିନରେ, ପୁଣି ସାନ ସା'ନ୍ତେ ଆଜି କଟକରୁ ଗାଁକୁ ଆସୁଚନ୍ତି !...ହଁ ସା'ନ୍ତାଣୀ, ଦେଖି ଦେଖି ତମେ ବେକରେ ଚୁପସରି ନାଇଚଟି ?

ସୁଲୋଚନା : ହଁ ।

ଦାସୀ : ସା'ନ୍ତେ କହୁଥିଲେ, କଟକରେ ବସଦ ଡିଆ ହେଉଛି ସାନ ସା'ନ୍ତେ ସୋରିଷିଆ ହାର ଆଣିବେ ।

ସୁଲୋଚନା : ସୋରିଷିଆ ହାର ତ ଅଛି ।

ଦାସୀ : ଅଛି ଯେ ଦି'ସରିଆ । କଟକରୁ ପାଁ'ସରିଆ ହାର ଆସିବ ଆଜି ଦୋଳ ମେଳଣରେ ସେ ହାର ପିନ୍ଧି ବେକ ତମର ଝଟକିବ ।...ହେଇଇଲେ ମା, ବଡ଼ ସା'ନ୍ତେ ଆସିଲେଣି ।

[ ଦୁହେଁ ଭିତର ପଟକୁ ଚାଲିଗଲେ । ବାହାରୁ ଆସିଲେ ଶ୍ୟାମ ଓ ଗୁମାସ୍ତା ନରହରି । ଶ୍ୟାମ ଟିକେ ବିବ୍ରତ ଜଣା ପଡ଼ୁଥା'ନ୍ତି ]

ଶ୍ୟାମ : କ'ଣ ତମେ କହୁଚ ମୁଁ ଠିକ୍ ଜାଣିପାରୁନାହିଁ ନରହର । ରେଳ ଠିକ୍ ବେଳରେ ଆସିଛନ୍ତି ?

ନରହର : ରେଳ ଠିକ୍ ବେଳରେ ଆସିଲା । ଇଷ୍ଟେସନରେ କେତେ ଲୋକ ଓହ୍ଲେଇଲେ ।

ଶ୍ୟାମ : ସେଇଠୁ ?

ନରହର : ସଦେଇପୁର କପିଳ ମିଶ୍ରେ ସେଇ ରେଳରୁ ଓହ୍ଲେଇଲେ । ମତେ ଦେଖି କହିଲେ—ନରହର, କଟକରୁ ସାନବାବୁ ମୋ ହାତରେ ବାରେନ ପଠେଇଚନ୍ତି, ସେ ଏ ବେଳା ଆସି ପାରିଲେ ନାହିଁ, ଗତକ ଆସିବେ ।

ଶ୍ୟାମ : ଗତକ ?

ନରହର : ମିଶ୍ରେ କହିଲେ, ସାନବାବୁ ବାରବାର କରି କହିଚନ୍ତି ଗତକ ନଶ୍ଚେ—ନଶ୍ଚେ ଆସିବେ ।

ଶ୍ୟାମ : ହୁଁ । ଗତକ ଅର୍ଥ, ସଞ୍ଜକୁ ରେଳ କଟକରୁ ଛୁଟିବ—ବାବୁ ଘରେ ପହଞ୍ଚୁ ପହଞ୍ଚୁ ରାତି ପାହିଯିବ କି ଛ'ଘଡ଼ି । ···ପୂଜାରୀଙ୍କୁ ଡାକବଟି—ପୂଜାରୀଙ୍କୁ ।

ନରହର : (ପାହାଚ ପାଖକୁ ଆଗେଇଯାଇ) ପୂଜାରୀ ଏ···ଓ ପୂଜାରୀ ଭାଇନା, ଇଆଡ଼େ ଆସ ।

[ ପୂଜାରୀ ଆସିଲେ ]

ପୂଜାରୀ : ଆଜ୍ଞା ?

ଶ୍ୟାମ : ସାନବାବୁ ରାତି ପାହିଯିବ କି ଛ' ଘଡ଼ିରେ ଆସି ପହଞ୍ଚିବେ । ···ଅସୁବିଧା ହବ ?

ପୂଜାରୀ : କିଛି ନାହିଁ ଆଜ୍ଞା । ବଡ଼ ଛୁ' ଢଡ଼କ ବୋଲନ୍ତୁ କି, ସବୁ ଦୋକ ଠୁଳ ହେଉଥିବେ । ଆମର ଭୋଗ ଲଗି, ପୂଜା ଅର୍ଚ୍ଚନା ହଉ ହଉ ରାତି ଅଧ ।

ଶ୍ୟାମ : ରାମଲୀଳା କେତେବେଳକୁ ଆରମ୍ଭ କରିବ ?

ପୂଜାରୀ : ଆପଣେ ଯେମିତି କହିବେ ।

ଶ୍ୟାମ : ଠିକ୍ ଦଶଟାକୁ ରାମଲୀଳା ଆରମ୍ଭ କରିଦେବ, ବୁଝିଲ ?

ପୂଜାରୀ : ଆଜ୍ଞା ।

ଶ୍ୟାମ : ସାନବାବୁ ଅସିଲା ବେଳକୁ ରାମଲୀଳା ପାଠ ଛୁଟିଯାଇ-ଥିବ—ତେଣିକି ତମ କାମରେ ତମେ ଲାଗିପଡ଼ିବ । ହେଲା ?

ପୂଜାରୀ : ଆଜ୍ଞା [ପୂଜାରୀ ଚାଲିଗଲେ]

ଶ୍ୟାମ : ନରହରି !

ନରହରି : ଇଷ୍ଟେସନକୁ ପୁଣି ଗାଡ଼ି ଯିବ ତ ?

ଶ୍ୟାମ : ନାହିଁ ନାହିଁ, ରାତିଟାରେ ବଳଦଗାଡ଼ି ନବ କାହିଁକି ? ସବାରି ବେହେରା ନେଇଯାଅ । ସାଙ୍ଗରେ ମଶାଲିଆ ଅଉ କେଇଜଣ ପିଆଦା ନବ । ସବାରି ବେହେରାଙ୍କୁ ହୁକୁମ୍— ତଡ଼େଇଦେମ୍ ସବାରି ଝପ୍‌ଟେଇ ଦେବେ ।

ନରହରି : ଆଜ୍ଞା, ଇଷ୍ଟେସନ୍‌ରୁ ଘର ଘଡ଼ିଏ ବି ଲାଗିବ ନାହିଁ ।

[ କଥା ମଝିରେ ଜମିଦାର ପ୍ରାୟ ଅନ୍ୟମନସ୍କ ହୋଇ-ପଡ଼ୁଥାନ୍ତି ]

ନରହରି : ମୁଁ ହଜୁର୍ ଯାଉଛି । ତେଣେ ସବାରି ବେହେରା···

ଶ୍ୟାମ : ଏଁ !···ହଁ ଯାଅ ।···ହଁ ନରହରି, ଏ ବେଳା ଚନ୍ଦ୍ର କାହିଁକି ଅସିପାରିଲା ନାହିଁ ମିଶ୍ରେ କିଛି କହୁଥିଲେ ?

ନରହର : କହୁଥିଲେ ଆଜ୍ଞା । କହୁଲେ କ— କଚେଷ୍ଟ କାମରେ କ'ଣ କଲଟର ସାହେବ ଡକେଇ ପଠେଇଲେ ବୋଲି ଅସି-ପାରିଲେ ନାହିଁ ।

ଶ୍ୟାମ : ହଉ, ତମେ ଯାଅ ।

[ ନରହର ଗୁମାସ୍ତା ଗଲେଗଲା । ଜମିଦାର ସେଇଠି ବସି-ରହିଥାନ୍ତି—ବେଳେ ବେଳେ ପୂର୍ବର ସେଇ ଅନ୍ୟମନସ୍କ ଭାବ ]

ଶ୍ୟାମ : (ଅନ୍ୟମନସ୍କ) ବୋଲି ଛୁଟିରେ କଲେକ୍ଟରର ସାହେବ ଡକେଇ ପଠେଇଲେ ! କଚେଷ୍ଟ କାମ !!

[ ସେମିତ ବସି ରହିଥା'ନ୍ତି । ଭିତର ଅଗଣାରେ କାହା ଉପରେ ସେମିତ ଦୃଷ୍ଟି ପଡ଼ିଲା ]

ଶ୍ୟାମ : କିଏ ? କିଏ ସେଠି ?

ଦାସୀ : (ଡରିଯାଇ) ଆଜ୍ଞା ମଣିମା, ମୁଁ ।

ଶ୍ୟାମ : ସେଠି ମୋ ବୋହୂମା' ଅଛୁ କି ?

ଦାସୀ : (ଡର ଡର) ହଁ ମଣିମା, ଏଠି ଠିଆହୋଇଛନ୍ତି ।

ଶ୍ୟାମ : (ଆଗ୍ରହରେ) ଡାକିଲୁ ତାକୁ ଡାକ୍ ।

[ କୁଣ୍ଠିତ ପଦରେ ସୁଲୋଚନା ଆସିଲେ ]

ଶ୍ୟାମ : ଆ ମା', ଏଠିକି ମୋ ପାଖକୁ ଆ । ଭଲ ହେଲା ତୁ ଏଠିକି ଆସିଲୁ । ଏଇ ଦେଖ୍ ସେଠି ରାମଲୀଳା ହବ ବୋଲି ସବୁ ଆୟୋଜନ ଚାଲିଲାଣି । ତମେ ସବୁ ତ ଏଇଠି ବସି ରାମଲୀଳା ଦେଖିବ । ସଞ୍ଜବେଳ ପରେ ପରେ ରାମଲୀଳା ଆରମ୍ଭ ହେଇଯିବ । ଜାଣିଚୁ ତ ଚନ୍ଦ୍ର ଆଜି ଆସୁଛି ।

ବୋଲ ସବୁ ଆମ ଏ ଦୁଆର ମୁହଁକୁ ଆସିବେ – ଏ ବର୍ଷ ଚନ୍ଦ୍ର ଏଇଠି ଏଇ ଦୁଆର ମୁହଁରେ ମେଳଣ ଶିରଘା ଆଉ ଫୁଲ ଚନ୍ଦନ ଅବିର ବେଦନା କରିବ ।···ହାତରେ କ'ଣ ଧରିଚୁ, କୁଆଡ଼େ ଯାଉଚୁ ?

ସୁଲୋଚନା : ପିଠା ମସଲ୍, ବେଗ ଖନ୍ଦାକୁ ନେଇଯାଉଚ ।

ଶ୍ୟାମ : (ମ୍ଲାନ ହସି) ହଉ ଯାଆ ମା ଯାଆ···ମୁଁ ଦେଖେ ତେଣେ କ'ଣ ହେଲା ।

[ ବାହାରକୁ ଉଠିଗଲେ ]

ଦାସୀ : ମୁହଁରେ କଛି କହିଲେ ନାହିଁ ସିନା, ତେମେ ସା'ନ୍ତାଣୀ ଏ ବରମ୍ପୁରି ଶାଢ଼ୀ ପିନ୍ଧିଚ ଦେଖି ବଡ଼ ସା'ନ୍ତେ ମନେ ମନେ କେମିତି ଖୁସି ହେଇଗଲେ ।

ସୁଲୋଚନା : ସେଇଠୁ ?

ଦାସୀ : ମତେ ତୁମେ ଗାଳିଦିଅ କି ଯାହାକର, ସାନ ସା'ନ୍ତେ ସକାଳ ବେଳା ଆସିଲେ ନାହିଁ ବୋଲି ତେମେ ଏ ବରମ୍ପୁର ଶାଢ଼ୀ ବଦଳେଇ ସେ ଆର ଶାଢ଼ୀ ଖଣ୍ଡକ ପିନ୍ଧିବ ବୋଲି ମତେ ଯାହା କହୁଥିଲ, ସେକଥା ମୁଁ ବଡ଼ ସା'ନ୍ତଙ୍କୁ କହିଦେବି ବୋଲି ମନେ ମନେ ଭାବୁଥିଲି ।

ସୁଲୋଚନା : (ହସି) କହିଲୁ ନାହିଁ କାହିଁକି ?

ଦାସୀ : ତମକୁ ଦେଖି ବଡ଼ ସା'ନ୍ତେ ଏମିତି ଖୁସି ହେଇଗଲେ ଯେ ସେଇ ଖୁସିରେ ମୋ ପାଟିରୁ ଆଉ କଥା ବାହାରିଲା ନାହିଁ । ···ହଁ ଜମିଦାର ସା'ନ୍ତ ତମକୁ ଏ ଶାଢ଼ୀରେ ଦେଖିଲେଣି, ତେମେ ଏ ଶାଢ଼ୀ ଆଉ ବଦଳେଇବ ନାଇଁଟି !

ସୁଲୋଚନା : ମାନିଲି, ଏ ଶାଢ଼ୀ ମୁଁ ବଦଳୁ ନାହିଁ । ହେଲେ ସକାଳ-ବେଳା ଷ୍ଟେସନ୍‌ରୁ ଯେ ଖାଲି ଗାଡ଼ି ଫେରିଆସିବ, ସେକଥା ମୁଁ ଜାଣିଥିଲି ।

[ ଦୁହିଁଙ୍କ ପ୍ରସ୍ଥାନ ]

[ କଟକ ସହର ତେଲେଙ୍ଗାବଜାର— ବାଈ ଉସ୍‌ମାନ ତାଙ୍କର ରଙ୍ଗଶାଳା । ଉସ୍‌ମାନ୍ ନୃତ୍ୟରତା ତରୁଣୀ । ଆସର ଜମିଛି । ଆସରରେ ବର୍ଦ୍ଧମାନ ବାବୁ ଚନ୍ଦ୍ରମଣି ଓ ବାବୁ ଗୋପୀବଲ୍ଲଭ—ଏ ଦୁହେଁ ସମ୍ମାନିତ ଅତିଥି । ଆଉ ଅଛନ୍ତି କଣନ୍‌ଲାଲ ଓ ନୋକା, ଏ ଦୁହେଁ ବାଈଜୀଙ୍କର ଅନୁଗତ ସେବକ ।·· ଚନ୍ଦ୍ରମଣି ହାର୍‌ମୋନିଅମ୍ ଉପରେ ଯେପରି ଅନ୍ୟମନସ୍କ ଭାବେ ଅଙ୍ଗୁଳି ଚାଳନା କରୁଛନ୍ତି । ଏକଥା ଠିକ୍ ଯେ ଅନ୍ୟମାନଙ୍କ ଅପେକ୍ଷା ଚନ୍ଦ୍ରମଣିବାବୁ ହେଉଛନ୍ତି ଉସ୍‌ମାନ୍ ବାଈର ବେଶୀ ଆପଣାର । ସେଥିପାଇଁ ବାବୁଙ୍କର ନିଜ ଘର ଅପେକ୍ଷା ଉସ୍‌ମାନ୍ ସାନ୍ନିଧ୍ୟରେ ବେଶୀ ସମୟ କଟେ । ଏସବୁ ସତ୍ତ୍ୱେ ଆଜି ଚନ୍ଦ୍ରମଣି ବାବୁ ନିଜେ ମଧ୍ୟ ଟିକିଏ ଅନ୍ୟମନସ୍କ ହୋଇପଡ଼ୁଥାନ୍ତି । ସମସ୍ତେ ଅପେକ୍ଷା କରୁଛନ୍ତି ଚନ୍ଦ୍ରମଣିବାବୁ କେତେବେଳେ ଗୀତ ଆରମ୍ଭ କରିବେ ]

ଗୋପୀ : ଜମିଦାର ସାହେବ ! (ବାବୁ ନିରୁତ୍ତର) ବାବୁ ଚନ୍ଦ୍ରମଣି ! ( ବାବୁ କେବଳ ମୁହଁ ଟେକି ଗୋପୀବାବୁଙ୍କୁ ଚାହିଁଲେ ) ହାରମୋନିଅମ୍ ରିଡ୍ ଉପରେ ଆଉ କେତେବେଳ—ଏ 'ସା' ରୁ ସେ 'ସା' ଯାଏ ହାତ ଚାଲୁଥିବ ଗଳା ଟିକେ ଫିଟୁ ।

ଚନ୍ଦ୍ରମଣି : (କେବଳ ଟିକେ ମ୍ଳାନ ହସିଲେ)

ଗୋପୀ : ବୁଝିଲ, ମନ ମାନୁନ ! ( ଉସ୍‌ମାନ୍‌କୁ ) ବାଣ୍ଡଗା, ଜମିଦାର ସାହେବଙ୍କୁ ଆଉ ବାନ୍ଧିରଖି ପାରୁନ ପରା !

ଉସ୍‌ମାନ୍ : (ଖିଲ୍ ଖିଲ୍ ହେଇ ହସି) କେଜାଣି ? ମୁଁ ତ ଜାଣେ ସିଏ ମତେ ବାନ୍ଧି ରଖିଚନ୍ତି !

ଗୋପୀ : (ହସି ଉଠି) ହାସ୍ୟ ହାସ୍ୟ-ହାସ୍ୟ ହାସ୍ୟ…

ଚନ୍ଦ୍ରମଣି : ଶୁଣ ଗୋପୀବଲ୍ଲଭ, ଆଜ ଗାଁରେ ଆମର ନଜ ମେଲଣ ।

ଗୋପୀ : କ'ଣ, କ'ଣ କହିଲ ? ମେଲଣ—ତା'ର ଅର୍ଥ ହୋଲ ମେଲଣ ।

ଚନ୍ଦ୍ରମଣି : ହଁ । ଆଜ ସକାଳୁ ମୋର ଗାଁକୁ ଯିବାର କଥା । ଆମ ମେଲଣରେ ପୁଣି ହରି-ହର ଭେଟ ହୁଏ !

ଗୋପୀ : ସେଇଥିପାଇଁ ତା'ହେଲେ ମନ ଉଛନ୍ନ ହେଲଣି ।

ଉସ୍‌ମାନ୍ : କାହାର ଭଲ ନ ହବ ?

ଗୋପୀ : ଶୁଣ, ଶୁଣ । ଗାଁରେ ତୁମର ମେଲଣ ହଉଚ, ଅତି ଉତ୍ତମ କଥା । ସେଇମତେ ଏଠି ଆମର ଏ ମହାମେଲଣ ଚୁଲଚ (ଆସର ମଝିରେ ଥିବା ଦାମିକା ପାନୀୟ ଓ ପାନପାତ୍ର ଆଡକୁ ଅଙ୍ଗୁଳି ନିର୍ଦ୍ଦେଶ କରି) ଏଠି ଆମେ ଯେମିତି ଦୋଳରେ ବସି ଝୁଲୁଚୁ—ଝୁଲୁନ କ ? ଇଏତ କୋଉ ମେଲଣରୁ କମ୍ ନୁହେଁ !

ଉସ୍‌ମାନ୍ : ଠିକ୍ ।

ଗୋପୀ : ଆଉ ତୁମେ ଯାହା କହିଲ ହରି-ହର ଭେଟ, ଏଠି ମୁଁ ହରି ଆଉ ତୁମେ ହର ।

[ ସମସ୍ତେ ହସି ଉଠିଲେ ]

ଗୋପୀ : ଶୁଣ ଶୁଣ, ହସିବାର କଥା ନୁହେଁ । ବୁଝାଇ ଦେଉଛ । ମୋ ନାଁ ଗୋପୀବଲ୍ଲଭ—ତା ଅର୍ଥ କୃଷ୍ଣ—ତା ଅର୍ଥ ହରି । ଆଜ୍ଞା ତୁମ ନାଁ ଚନ୍ଦ୍ରମଣି—ତା ଅର୍ଥ ଚନ୍ଦ୍ରଚୂଳ—ତା ଅର୍ଥ ଶିବ—ତା ଅର୍ଥ ହର । ଏମନ୍ତେ ଏଠି ଆମର ହରି-ହର ଭେଟ ଘଟିଲା ।

[ ଏଥର ଚନ୍ଦ୍ରମଣି ବାବୁଙ୍କ ସହିତ ସମସ୍ତେ ହସିଉଠିଲେ ]

ଗୋପୀ : ହରି-ହର ଭେଟ ତ ହେଲା, ଆସର କିଏ ଚଢ଼ାଇବ ? ବାଇଜୀ, ଶ୍ରୀପାଦ ଟିକେ ଉଠୁ ।...ବାବୁ ଚନ୍ଦ୍ରମଣି, ଏବେ ଗଳାଟିକେ ଫିଟୁ ।

ଚନ୍ଦ୍ରମଣି : ସବୁ ହେବ । ହେଲେ ଉସ୍‌ମାନ୍ ବାଈ, ଆଜି ସନ୍ଧ୍ୟାରେ ମୁଁ ନଷ୍ଟସ୍ଥ ଗାଁକୁ ଯାଉଛି ।

ଗୋପୀ ଓ ଉସ୍‌ମାନ୍ : } ନଷ୍ଟସ୍ଥ ନଷ୍ଟସ୍ଥ !

ଉସ୍‌ମାନ : (ଖୁବ୍ ନମ୍ରତାର ସହିତ) ଗାଁରେ ତମର ସମସ୍ତେ ଅଛନ୍ତି । ଏ ଦୋଳ ମେଲଣରେ ତମେ ଗାଁକୁ ନ ଯାଇ ଏଠି କଟକରେ ରହିବ ? ଏବେ ତ କରେଣ୍ଟ ବନ୍ଦ । ଆଜି ରାତି ଗାଡ଼ିରେ ତମେ ଘରକୁ ଯାଅ, ଘରେ ତମକୁ ଦେଖି ସମସ୍ତେ କେତେ ଖୁସି ହେବେ । କରେଣ୍ଟ ଖୋଲିଲେ ପୁଣି କଟକ ଆସିବ ।

ଗୋପୀ : ହଁ ବାବୁ ସାହେବ୍, ବାଈଜୀ ଠିକ୍ କହୁଛନ୍ତି । ମୁଁ ବି ଆଜି ରାତି ଗାଡ଼ିରେ ମେଲଣ ଦେଖିବା ପାଇଁ ମୋ ମାମୁ ଘରକୁ ଯିବି । ଷ୍ଟେସନ୍‌ରେ ଭେଟାଭେଟି । ହଁ ବାଈଜୀ...

[ ହାତରେ ଇଙ୍ଗିତ କଲେ ]

[ ବାଈଜୀଙ୍କ ନୃତ୍ୟ ଆରମ୍ଭ ହେଲ ଓ ଚନ୍ଦ୍ରମଣି ଗୀତ ଧରିଲେ । ···ସେଇଦିନ ସନ୍ଧ୍ୟାର ଘଟଣା । ସ୍ଥାନ ଉସ୍‌ମାନ୍ ବାଈର ସେଇ ଘର । ସଦର ଦରଜା ବନ୍ଦ । ବାହାର ପାଖରେ କବାଟରେ ଶବ୍ଦ ହେଲା । ପରିଚାରିକା ହେନା ଯାଇ କବାଟ ଖୋଲିଲା । ଅସ୍ତବ୍ୟସ୍ତ ହୋଇ ଗୋପୀବଲ୍ଲଭ ପଶିଆସିଲେ ]

ହେନା : (ଗୋପୀଙ୍କୁ ଦେଖି) ଏ ମା' ! (ବଡ଼ ପାଟିରେ) ମା'ଜୀ ଗୋପୀ-ବାବୁ ଆସିଛନ୍ତି ।

ଉସ୍‌ମାନ୍ : (ଭିତରୁ) ଯାଉଛି ଯାଉଛି ( ଆସିଲେ)

ଗୋପୀ : ଟ୍ରେନ୍ ଟାଇମ୍ ହୋଇଗଲାଣି, ସେତେବେଳେ ଭୁଲ୍‌ରେ ଘଣ୍ଟାଟା ଏଠି ଛାଡ଼ିଦେଇ ଯାଇଥିଲି ।

ଉସ୍‌ମାନ୍ : ଖାଲି ଘଣ୍ଟା ନୁହେଁ, ସୁନା ଘଣ୍ଟା । ନିଅ । ···ଆଉ ଜମିଦାର ବାବୁ ?

ଗୋପୀ : ଗୁରୁଟା ବେଳେ ଦେଖାହୋଇଥିଲା । ଘରକୁ ଯିବା ପାଇଁ ଚଞ୍ଚଳ ହେଉଥା'ନ୍ତି । ସିଏ ଆସିବେ କାଳୀଗଳିରୁ, ମୁଁ ଆସୁଛି ଡଗରପଡ଼ାରୁ । ଷ୍ଟେସନ୍‌ରେ ଭେଟାଭେଟି । ଯାଉଛି ।

[ ଗୋପୀବାବୁ ଚାଲିଗଲେ ]

ଉସ୍‌ମାନ୍ : (ମନକୁମନ) ମୁଁ ଜାଣୁଛି ଚନ୍ଦ୍ରମଣି ବାବୁ ମୋ ଘରକୁ ଗୋଟିଏ ଦିନ ନ ଆସିଲେ ମତେ ଯୁଗ ପରି ଲାଗେ । ଆଉ ସିଏତ ଜାଣି ମତେ କଣି କେଇଛ । ହେଲେ ଅଳକା ଦିନ' ଅଲଗା । ଆଜ ସକାଳବେଳା ଘରକୁ ଯାଇପାରିଲି ନାହିଁ ବୋଲି ତା ଗଳାରୁ ସ୍ୱର ବାହାରିଲା

ନାହିଁ । ମୋର କାଲିକ ଆଜ ମନେ ହଉଚ ମୁଁ ତାର ଶୁଭ ମନାସିବ । ସେ ଘରକୁ ଯାଉ । ଘରେ ତାଙ୍କୁ ଦେଖି ସମସ୍ତେ ଖୁସି ହେବେ । ମୁଁ ଏଇ ଶୁଭ ତାର ମନାସୁଚ । ମେଲଣ ପରେ ସେ କଣ୍ଟକ ଆସି ଆଗେ ମୋ ଦୁଆରେ ପାଦ ଥୋଇବ । ଏଠିକି ନ ଆସି ସେ ରହିପାରିବ ନାହିଁ । (ଏତିକିବେଳେ ବାହାରେ ଗାଡ଼ି ଅଟକିବାର ଶବ୍ଦ ହେଲା । ସେ ହେନାକୁ ଡାକିଲେ ) ହେନା, ହେନା !

ହେନା : କ'ଣ ମା'ଜୀ !

ଉସ୍‌ମାନ୍ : ଦେଖିଲୁ କେହି ଆସିଲେ କି ? ଯିଏ ହଉ ତାଙ୍କୁ ସେଇ ବାହାରେ ବାହାରେ ମନାକରି ଦରଜା ବନ୍ଦ କରି ଆ ।

[ଉସ୍‌ମାନ୍ ଭିତରକୁ ଚାଲିଗଲେ । ହେନା ଦରଜା ଖୋଲିଲା । ତା ସାମ୍‌ନାରେ ସେ ଦେଖୁଚ ଚନ୍ଦ୍ରମଣିବାବୁ ଠିଆ ହୋଇଚନ୍ତି । ସେ ହ'ପାଦ ପଛକୁ ଘୁଞ୍ଚିଆସି ତାଙ୍କୁ ଚାହିଁ-ରହିଚ, ତା ପାଟିରେ କଥା ନାହିଁ ]

ଚନ୍ଦ୍ରମଣି : କ'ଣ ହେଲା ? ମତେ ଦେଖି ଏମିତି ପାଟି ଆଁ କରି ଠିଆ ହେଇଚୁ କାହିଁକି ? ବାଈଜୀ କାହାନ୍ତି ?

[ହେନା ତାଙ୍କୁ କିଛି ନ କହି ମା'ଜୀ ମା'ଜୀ ଡାକ ଦୌଡ଼ି ପଳାଇଲା । ଚନ୍ଦ୍ରମଣି ଟିକେ ଆଗେଇ ଆସି ଠିଆହେଲେ । ହାତରେ ଗୋଟିଏ ସୁନ୍ଦର ଗ୍ରେଟ ବାକ୍‌ସ । ଉସ୍‌ମାନ୍ ଭିତରୁ ଆସି ଚନ୍ଦ୍ରମଣିଙ୍କୁ ଦେଖି ବସ୍ମୟଭରା ଦୃଷ୍ଟିରେ କିଛି ଦୂରରେ ଠିଆହେଲେ ]

ଚନ୍ଦ୍ରମଣି : କ'ଣ ହେଲା ? ଏଠିକି ଆସ ।

[ଉସ୍‌ମାନ୍ ଦ୍ୱିଧାରୁ ମୁକ୍ତ ହେଇପାରୁ ନ ଥାଏ । ତଥାପି ସେ ଆସିଲା ]

ଉସ୍‌ମାନ୍ : ତୁମେ ! ···ତୁମେ ତୁମ ଗାଁକୁ ଯାଉଥିଲ ନା ?

ଚନ୍ଦ୍ରମଣି : ହଁ, ଯାଉଥିଲି ।

ଉସ୍‌ମାନ୍ : ପୁଣି ।

ଚନ୍ଦ୍ରମଣି : ଫେରିଆସିଲି ।

ଉସ୍‌ମାନ୍ : ଜମିଦାର୍ ସାହେବ ବାଟ ଚାହିଁ ବସିଥିବେ—ଆଜି ତମ ଡୋଲମେଲଣ !

ଚନ୍ଦ୍ରମଣି : ଠାକୁର ଦେବତା କାମ, ଅଟକବନି ।

[ଏବେବି ଉସ୍‌ମାନ୍ ନିଜ ଚିନ୍ତାରୁ ମୁକ୍ତ ହୋଇପାରୁନି]

ଉସ୍‌ମାନ୍ : ଆଉ ସା'ନ୍ତାଣୀ ?

ଚନ୍ଦ୍ରମଣି : ପୁରରେ ନଜର୍ ରହିବ । ସୁନା ସୀତା ଯେବେ ସୀତା ହୋଇ ରାମଚନ୍ଦ୍ରଙ୍କ ପାଖରେ ବସିପାରିଲେ, ତେବେ ଉସ୍‌ମାନ୍ ତାର କାହିଁକି···(ଏଇଠି ତାଙ୍କ କଥା ଅଟକିଗଲା । ବାକ୍ସ ଖୋଲି ପାଞ୍ଚସରିଆ ସୁନାହାରଟି ହାତରେ ଟେକି ଧରିଲେ । ଏଇଠି କିଛି ମୁହୂର୍ତ୍ତ ପାଇଁ ଉସ୍‌ମାନ୍‌ର ଆଖି ବନ୍ଦ ହୋଇଗଲା । ତା'ପରେ ସେ ଫେରିଗଲା ତାର ପୂର୍ବର ସେଇ ଉସ୍‌ମାନ୍ ବାଇର ଭୂମିକାକୁ । ମୁଗ୍ଧ ଓ କୃତଜ୍ଞତା ଭରା ଦୃଷ୍ଟିରେ ବାବୁଙ୍କ ଠାରୁ ଦୁଇହାତ ବଢ଼ାଇ ହାରଟି ନେଇ ନିଜ ଗଳାରେ ପିନ୍ଧିଲା । ତା'ପରେ କୁର୍ଣ୍ଣିସ୍ କରି, ଇଙ୍ଗିତରେ ବାବୁଙ୍କୁ ବସିବାର ଅନୁରୋଧ ଜଣାଇ, ପୁଣି କୁର୍ଣ୍ଣିସ୍ କରି ପଛେଇ ପଛେଇ ଯାଇ ସ୍ୱସ୍ଥାନରେ ବସି ସେତାର୍‌ଟିକୁ ନିଜ କୋଳକୁ ଉଠାଇନେଲା ।··· ସେତାର୍‌ର ମଧୁଛନ୍ଦ କ୍ରମେ ଏକ ଉତ୍କଟ ଯନ୍ତ୍ର ସଙ୍ଗୀତରେ ପରିଣତ ହେଲା )

[ଜମିଦାରଙ୍କ ଗୃହର ଏକ କକ୍ଷ । ସମସ୍ତ ପୂର୍ବାହ୍ନ । ସା'ନ୍ତାଣୀ ସୁଲୋଚନା ବସି ଝୋଟି ଦେଉଛନ୍ତି । ପାଖରେ ଗୋଟିଏ ଅଳ୍ପବୟସ୍କା ଦାସୀ ମାଣିକ···ଗତ ରାତ୍ରିରୁ ମେଳଣ ଶେଷ ହୋଇଯାଇଛ, କିନ୍ତୁ ଚନ୍ଦ୍ରମଣି ବାବୁ ଆସିନାହାନ୍ତି । ଏହା ଜମିଦାର ପରିବାର ଉପରେ ଏକ ପ୍ରଚଣ୍ଡ ଆଘାତ । ମାତ୍ର ସୁଲୋଚନାଙ୍କୁ ଦେଖିଲେ ଜଣାଯାଏ ଏ ଆଘାତ ତାଙ୍କୁ ସ୍ପର୍ଶ କରିନାହିଁ । ସେ ଯେପରି ପୂର୍ବରୁ ଜାଣିପାରିଥିଲେ ଯେ ସ୍ୱାମୀ ତାଙ୍କର ଆସିବେ ନାହିଁ, ଆଉ ସେଇ ଅନୁସାରେ ତାଙ୍କର ମାନସିକ ପ୍ରସ୍ତୁତ ଆପେ ଆପେ ହୋଇଯାଇଥିଲା । ଉପସ୍ଥିତ ସେ ଜମିଦାର ଗୃହର ଜଣେ କୁଶଳୀ ଗୃହିଣୀ ପରି ତାଙ୍କ କାମ କରିଚାଲିଚନ୍ତି । ମୁଖ-ମଣ୍ଡଳରେ ବିମଳ ଆଭା ପ୍ରକଟିତ ]

ମାଣିକ : ସା'ନ୍ତାଣୀ ମ !

ସୁଲୋଚନା : କ'ଣ ?

ମାଣିକ : ଏ ଟିକି ଛତା ଢ'ଟାରେ କ'ଣ ରହିବଟି ?

ସୁଲୋଚନା : ଓଲଟା, ସବୁ ପାସୋର ଦେଲୁଣି ?

[ମାଣିକ ଟିକେ ଶଙ୍କିଗଲା । ସାନ୍ତାଣୀଙ୍କ ମୁହଁରେ ହସ ]

ସୁଲୋଚନା : ଆଜ ଥରେ ମୂଳରୁ କହିଯା' ।

ମାଣିକ : ଏ ଛତାରେ ବଡ଼ ସା'ନ୍ତଙ୍କ ଆସନ ପଡ଼ିବ । ସେ ବସିବେ ; ଏଠି ଘିଅ ଥାଳି—ଏଠି ସବୁ ଡାଲି ଛାଟିଆ, ଭୁ'ଣ ଛାଟିଆ, ଭଜା ଥାଳିଆ, କ୍ଷୀର ବେଲା, ଆଉ ଛାଟିଆ ଆଉ ଥାଳିଆ··· ଆଉ ଆଉ, ସା'ନ୍ତାଣୀ ଆଜ ଏ ଟିକି ଛତା ଢ'ଟାରେ ?

ସୁଲୋଚନା : ଘିଅଗିନା, ଲୁଣଗିନା···ଆଜ ଏଇ ଯୋଉ ଚିଠା ମୁଁ ଲେଖୁଚି, ଏଥିରେ କ'ଣ ରହିବ କହ ।

ମାଣିକ : ଏଥିରେ···ଏଥିରେ ପାଣି ଗିଲସ ।

ସୁଲୋଚନା : ହଁ, ଠିକ୍ କହୁଚୁ—ପାଣି ଗିଲସ ।···ତୁ ଗଲୁ ମାଣିକ, ବାପା ସା'ନ୍ତେ ଗାଧୋଇ ଗଲେଣି କି ନାହିଁ ଦେଖିଆସିବୁ ।

[ମାଣିକ ବାହାରକୁ ଗଲା, କିନ୍ତୁ ପ୍ରାୟ ସଙ୍ଗେ ସଙ୍ଗେ ଫେରିଆସିଲା ]

ମାଣିକ : (କମ୍ପିତଗଳାରେ) ସା'ନ୍ତାଣୀ, ବଡ଼ ସା'ନ୍ତେ ଆସୁଚନ୍ତି ।

[ମାଣିକ ଚାଲିଗଲା । ସୁଲୋଚନା ଉଠି ଠିଆ ହୋଇଗଲେ । ପାଦରେ ହାତୀଦାନ୍ତ ଚପଲର କଠଉ, କାନ୍ଧରେ ସୁଦୃଶ୍ୟ ସମ୍ବଲପୁରୀ ଗାମୁଛା । ଜମିଦାର ଆସି ଦ୍ୱାରଦେଶରେ ହିଁ ଅଟକିଲେ ]

ଶ୍ୟାମ : (ସ୍ନେହ ଓ ବାତ୍ସଲ୍ୟଭରା କଣ୍ଠ) ମା···ମୁଁ ଆସିଥିଲି···

[କଣ୍ଠ ରୁଦ୍ଧ ହୋଇଗଲା । ସେ ଭାବପ୍ରବଣ ହୋଇପଡ଼ିଚନ୍ତି । ଆଖିରେ ଲୁହ ଆସିଯିବାର ଉପକ୍ରମ । କିନ୍ତୁ ପର ମୁହୂର୍ତ୍ତରେ ସେ ନିଜକୁ ସଂଯତ କରିନେଲେ ]

ଶ୍ୟାମ : ତୋର ମା' ଏଠି ଏଇସବୁ କାମ ଚାଲିଚି ?

ସୁଲୋଚନା : ଆପଣ ଏ ଯାଏ ଗାଧେଇନାହାଁନ୍ତି ! କେତେବେଳ ହେଲାଣି କହିଲେ ?

[ମେଳଣ ଘଟଣା ପରେ ସୁଲୋଚନାଙ୍କର ଏଭଳି ସହଜ ସରଳ ଆଚରଣରେ ଜମିଦାର ଚମତ୍କୃତ ହୋଇ ଉଠିଲେ । ମନ କଥା ଖୋଲି କହିବା ପାଇଁ ଯେମିତି ସେ ଭରସା ଖୋଜି ପାଉଚନ୍ତି ]

ଶ୍ୟାମ : ମେଲଣ ଭାଙ୍ଗିଲା, ଚନ୍ଦ୍ର କଟକରୁ ଆସିଲା ନାହିଁ । ଷ୍ଟେସନରୁ ସକାଳେ ଖାଲି ଗାଡ଼ି ଆସିଥିଲା, ଗାଡ଼ିରେ ଖାଲି ସବାରି ଫେରି ଆସିଲା । ତା'ପାଇଁ ଏଇଟା ଗୋଟାଏ କିଛି ନୂଆ କଥା ନୁହେଁ । ଏମିତି ମାସ ବର୍ଷ ବିତିଯାଇଚି, ସେ ଘର ମୁହଁ ଦେଖି ନାହିଁ । ତୋ ଖାତିର୍‌ରେ ବି ତୋ ମୁହଁ ଦେଖି ନାହିଁ । ହେଲେ ଏ ସନ କଥା ଭିନ୍ନ । ଏତେ ବଡ଼ ଗୋଟାଏ ଜମିଦାରି ଇଲାକାର ପ୍ରଜାପାଟକ ରୁଣ୍ଡ ହେଉଚନ୍ତି—ବର୍ଷେ ଦେଢ଼ବର୍ଷ ପରେ ସାନ ସା'ନ୍ତ ଆସୁଚନ୍ତି ତାଙ୍କୁ ଦେଖିବେ । ଉଆସର ଦାସୀ ପରିବାରି ବାଟ ରୁନ୍ଧି ବସିଚନ୍ତି - କଟକରୁ ପାଞ୍ଚସରିଆ ସୋରିଷିଆ ହାର ଆସିବ, ସା'ନ୍ତାଣୀ ନୂଆ ହାର ପିନ୍ଧି ଶହେ ବର୍ଷ ଦୋଳ-ମେଲଣର ଦୋଳ ଦର୍ଶନ କରିବେ । ...ଏମାନଙ୍କୁ ଏ ଭରସା ତ ସାନ ସା'ନ୍ତ ଦେଇନଥିଲା, ମୁଁ ଦେଇଥିଲି—ମୁଁ ! ହେଲେ...ନାଃ । ଆଜି ନୁହେଁ । ଢେର୍ ଢେର୍ ଆମେ ସହିଲୁଣି । ମେଲଣ ଭାଙ୍ଗିଲା ପରଠୁଁ ମୁଁ ସମସ୍ତଙ୍କ ପାଖରୁ ମୁହଁଛପା ଦେଇ ରହିଲା ଭଳି ରହିଥିଲି । ମୋ ଆଖିର ଲୁହ ସମ୍ଭାଳି ପାରୁନଥିଲି । ଆଜି, ମୋର ଡର ହେଉଥିଲା ତୁ କାଳେ ମୋ'ଠି ପରି ଦୁଃଖ କରୁଥିବୁ—ଶୋକ କରୁଥିବୁ । କିନ୍ତୁ ତୋର ଏ ମନର ବଳ ଦେଖି ମୋ ମନୋବଳ ଶହେ ଗୁଣ୍ ବଢ଼ିଗଲାଣି । ...ତୁ ପାରିବୁ ମା—ଗୋଟାଏ କୁଳାଙ୍ଗାର ଅମଣିଷକୁ ଶାସନ କରି ତୁ ତାକୁ ଠିକଣା ବାଟକୁ ଆଣିପାରିବୁ । ସେ ଦମ୍ଭ, ସେ ସାହସ ତୋର ଅଛି । ଆଜି, ସେଇ ବ୍ୟବସ୍ଥା ମୁଁ କରୁଚି ।

[ଏଇଠି ସା'ନ୍ତାଣୀ ମୁହଁ ଟେକି ଅରୁଟିଏ ଶ୍ୱଶୁରଙ୍କ ମୁହଁକୁ ଚାହିଁ ପୁଣି ମୁହଁ ତଳକୁ କଲେ ]

ଶ୍ୟାମ : ହଉ, ତୋ କାମ ତୁ କର, ମୁଁ ଯାଏଁ ଗାଧୁଆପାଧୁଆ ଶେଷ କରେ...ଆନ୍ତେ ମା ଦେଖି, ସେ କୁଞ୍ଚ ଲୁଗା ଦେଖି ।

[ସା'ନ୍ତାଣୀ ଲୁଗା ସବୁ ଆଣିକି ଆଣି ଆଗେଇ ଥୋଇଲେ । ଜମିଦାର କୁଞ୍ଚ ଲୁଗାଟି ଉଠେଇଆଣି ଦେଖିଲେ ]

ଶ୍ୟାମ : ଏ ଲୁଗା କ'ଣ ମୋଲେଇ ବାରିକ କୁଞ୍ଚ କରିଚ ? ···ଉଁ ହୁଁ, ଇଏତ ମୋଲେଇ ବାରିକ ହାତ କୁଞ୍ଚ ପରି ମାଲୁମ ପଡ଼ୁ ନାହିଁ । ···କିଏ କରିଚ ? ତୁ ?

[ସା'ନ୍ତାଣୀ ପଲଙ୍କ କୁଣ୍ଡା ସହିତ ମୁଣ୍ଡ ଝୁଙ୍କାଇ ସମ୍ମତି ଜଣାଇଲେ । ଜମିଦାରଙ୍କ ଖୁସିର ସୀମା ରହିଲା ନାହିଁ ]

ଶ୍ୟାମ : ହାଁ ! ···ମୋଲେଇ ବାପୁଡ଼ାର ସାଧ୍ୟ କାହିଁ ସେ ଏ ଭେଦ ଜାଣିବ ! ···ରାମକୃଷ୍ଣ ମହାନ୍ତି ଝିଅ ତୁ, ଘରକରଣାରେ ଯେମିତି ଧୁରନ୍ଧର, ଘର ବାନ୍ଧିବାରେ ବି ତୁ ସେମିତି ଦକ୍ଷ, ସେମିତି ପାରଙ୍ଗର ହେବୁ ।···ହଁ ମା' ଏଇଟା କି କୁଞ୍ଚଟି ? ଏ କୁଞ୍ଚ ନାଁ କ'ଣ ?

ସୁଲୋଚନା : ମନ୍ଦାର କୁଞ୍ଚ !

ଶ୍ୟାମ : ହୁଁ, ମନ୍ଦାର କୁଞ୍ଚ !···ଏ କୁଞ୍ଚ ଫିଟିବ କେମିତି—ଏ କାନଟା ଟାଣିଦେଲେ ତ ?

[କହୁ କହୁ କୁଞ୍ଚର ଗୋଟିଏ କାନ ଟାଣିଦେଲେ । କୁଞ୍ଚଟି ଅତି ସୁନ୍ଦର, ଅତି ମନୋହର ଢଙ୍ଗରେ ଫିଟିଗଲା ]

ଶ୍ୟାମ : ଏଁ ! ଫିଟିଗଲା !! (ହୋ ହୋ ହୋଇ ହସି ଉଠିଲେ) ଆଲୋ ମା, ଏ କୁଞ୍ଚ ତ ଫିଟିଗଲା—ପୁଣି ଫିଟିଲା କେମିତି ଢଙ୍ଗରେ ! ଯେମିତି ଗୋଟାଏ ଯନ୍ତ୍ର ।

ସୁଲୋଚନା : ମୁଁ ପୁଣି କୁଞ୍ଚ କରିଦଉଚି ।

ଶ୍ୟାମ : କାହିଁକି ଲୋ ମା, ମୁଁ ଏଇକ୍ଷିଣି ଗାଧେଇ ଆସି ଏ ଲୁଗା ପିନ୍ଧିବି । ତୁ କାହିଁକି ଆଉ କଷ୍ଟ କରିବୁ ?

[ଲୁଗାଟି ଥାଳରେ ପୁଣି ରଖିଲେ ]

ଶ୍ୟାମ : ହଉ, ତୁ କ'ଣ କରୁଚୁ କରୁଥା, ମୁଁ ଯାଏଁ । (ଖୁବ୍ ଖୁସି ମନରେ ଚାଲିଗଲେ )

[ଉସ୍ମାନ୍ ବାହାର ଆସର । ଆସର ଚାଲିଚ । କେବଳ ଉସ୍ମାନ୍ ଆଉ ଚନ୍ଦ୍ରମଣି ବାବୁଙ୍କ ଛଡ଼ା ଆଉ କେହି ନାହାଁନ୍ତି । ଉସ୍ମାନ୍ ବାବୁଙ୍କ ପାର୍ଶ୍ୱ ସଂଲଗ୍ନ ହୋଇ ବସିଚ । ନାଚ ଗୀତ ଚାଲିଚ—ସମସ୍ତ ମଧ୍ୟାହ୍ନ । ଯଥା ସମୟରେ ନୃତ୍ୟ-ଗୀତ ଶେଷ ହେଲା । ଭିତରୁ ଆସିଲା ହେନା । ]

ହେନା : ପଲଙ୍କ ସଜଡ଼ା ହେଲାଣି ।

ଉସ୍ମାନ୍ : ଶେଯ ଉପରେ କ ଚାଦର ପକେଇଚୁ ?

ହେନା : ସେ ଜପ୍ପୁ ପୁସ୍ପ ଛପା ଚାଦର ।

ଉସ୍ମାନ୍ : ତୁମେ ଯାଅ ବାବୁ, ବଛଣାରେ ଟିକଏ ଗଡ଼ପଡ଼ ହୁଅ । ଆଜ ତ ପୁଣି ରାତିଅଧ ଯାଏ ଆସର ବସିବ ବୋଲି କହିଚ ।

ଚନ୍ଦ୍ରମଣି : ଏଁ ? ହଁ ତୁମେ ଆସ ।

[ଉଠି ଭିତରକୁ ଗଲେ ]

କଣନ୍ : ଦେବାଜୀ (ଉସ୍ମାନ୍ ଅନ୍ୟମନସ୍କ ହେଇପଡ଼ିଥିଲ )

ଉସ୍ମାନ୍ : (ଚମକ) ଏଁ ?

କଣନ୍ : ଚମକ ପଡ଼ିଲେ ଯେ ! କ'ଣ କିଛି ଭାବୁଥିଲ ?

ଉସ୍ମାନ୍ : ହଁ ।

କଣନ୍ : କ'ଣ ?

ଉସ୍‌ମାନ୍ : ଏଇ ବାବୁ କଥା କହୁଥିଲି ।

କଣନ୍ : ମୁଁ ବି ସେଇ ବାବୁ କଥା ଭାବୁଚି ।

ଉସ୍‌ମାନ୍ : କ'ଣ, କି କଥା ?

କଣନ୍ : ଏ ବାବୁଟା କ'ଣ ଏଠି ଘରଦ୍ୱାର କରି ରହିଗଲା ? ପାଞ୍ଚ-ସାତ ଦିନ ହେଇଗଲା—ଏଇଠି ରହୁଚି—ଏଇଠି ଖାଉଚି—ଏଇଠି ଶୋଉଚି— ! ···କ'ଣ କରୁଛ କହୁନ ଯେ ?

ଉସ୍‌ମାନ୍ : ତୁ ତ ଜାଣୁ କଣନ୍, ବାବୁର ଖାଇବା ପିଇବାରେ ମୁଁ କଚ୍ଛି ହେଳା କରିନ । ଜମିଦାର ଘର ପିଲା ସେ !

କଣନ୍ : ଆରେ ଦେବାଜୀ, ମତେ ପୁଣି ଏକଥା କହୁଚ ? ସବୁ ଜିନିଷ ମୁଁ ତ ଆଣି ଯୋଗୋଉଚି । ଏ ବେଳା ବିରିଆନି ତ ଆର ବେଳାକୁ ମୁର୍ଗା । ଚପ୍ କଟ୍‌ଲେଟ୍ ଡେଭିଲ୍ କବାବ୍, କୋଉଥିରେ ଊଣା ନାହିଁ । ଆଉ ରଙ୍ଗିଆ ଦୋକାନ ରବଡ଼ି ଆଉ ଛେନା ପାୟସ ତ···

ଉସ୍‌ମାନ୍ : ସେଇ କଥା । ଏ ସବୁଥିରେ ମୁଁ କେବେ ଊଣା କରିନି । ହେଲେ ତୁ ଯୋଉ କଥାଟା କହିଲୁ ନା···

କଣନ୍ : ଏଇ ବାବୁ ଏଇଠି ଘରଦ୍ୱାର କରି ରହିବା କଥା ତ ?

ଉସ୍‌ମାନ : ହଁ, ସେକଥାରେ ମୋ ମନଟା କାହିଁକି ଦବିଯାଉଚି । କେବେ କେବେ ଏମିତି ଦିନେଅଧେ ଏଠି ରହିଯାଉଥିଲେ, ଏଥର ଏକାବେଳକେ ଏତେ ଦିନ···

କଣନ୍ : ତ ହେଲା କ'ଣ ? କ'ଣ ନ ଦଉଚି ସେ ତମକୁ । ଏଇ ହେଦିନ ! କେତେ ଭରିଟି ସେ ସୁନାହାରଟା ?

ଉସ୍‌ମାନ୍ : ପାଞ୍ଚପଚିଶିଆ ପଦର ଭରି ।

କଶନ୍ : ହଁ, ପନ୍ଦର ଭରି ହାର ଚମ ଗଳାରେ ପିନ୍ଧାଇଦେଲି । ଆଜ ଟଙ୍କାପଇସା ତ...

ଉସ୍‌ମାନ୍ : ମୁଁ ସେକଥା କହୁନ ।

କଶନ୍ : ଆଉ କୋଉ କଥା ? ବାବୁ ଚନ୍ଦ୍ରମଣି ତ ଚମପାଇଁ ତା ଜାନ୍ ଦେଇଦେବ ! ଆଉ ଚେମେ ବି ତ ବନକୁ ହ'ଉନ ହୋଇଗଲେ ବାବୁ କାହିଁ—ବାବୁ କାହିଁ ଝୁରି ହଉଥିବ ।

ଉସ୍‌ମାନ୍ : ହେଲା ଯେ, ସବୁ କଥାର ଗୋଟାଏ ମାତ୍ରା ଥାଏ । ମାତ୍ରାଟା ବେଶୀ ହୋଇଗଲେ...

କଶନ୍ : ବୁଝିଲି ।...ଅଚ୍ଛା ପିଚା ଲାଗେ ।

[ବାହାରେ କବାଟ ବାଡ଼େଇବାର ଶବ୍ଦ ]

ଉସ୍‌ମାନ୍ : ଦେଖ୍ ତ କଶନ୍ କଏ ଡାକୁଚ ? ବାବୁ କଥା କହୁ କହୁ ନାହିଁ । ପିଆଉ ପିଆଉ ଫେରେଇଦବୁ ।

[କଶନ୍ କବାଟ ଖୋଲିଲା । ଗୋପୀବଲ୍ଲଭ ପଶି ଆସିଲ ]

ଗୋପୀ : (କହୁ କହୁ ଆସିଲ) ଏ ଉଚରେ ହ' ହ' ଥଉ ଫେରିବ ଦେଖାଜା, ଆଜ ଗୋପୀବଲ୍ଲଭ ଫେରିଯାଇପାରିବ ନାହିଁ ।

ଉସ୍‌ମାନ୍ : ମତେ ମାଫ୍‌କର ଗୋପୀବାବୁ ।

ଗୋପୀ : ଶୁଣ ଉସ୍‌ମାନ୍ ବାଈ, ଦୋଳଛୁଟିରେ ଚନ୍ଦ୍ରମଣି ବାବୁ ଗାଁ'କୁ ଗଲ, ମୁଁ ଗାଁ'କୁ ଗଲି । ଛୁଟି ସରିଲ, ମୁଁ ଫେରିଲି, ସେ ଫେରିଲାନି ।

ଉସ୍‌ମାନ୍ : ମତେ ଏସବୁ କଥା କହୁଚ କାହିଁକ ?

ଗୋପୀ : କହୁଚ ଏଇଥିପାଇଁ ଯେ ଅଫିସ୍ ଛନଦନ ହେଲା ଖୋଲାଲଣି । ଚନ୍ଦ୍ରମଣି ବାବୁ ଆସିଲା ନାହିଁ । ଆସିଲା ନାହିଁ ମାନେ ସେ ଆଜ ଆସିବ ନାହିଁ କି ତମ ଦୁଆର ମାଡ଼ିବ ନାହିଁ । ଏଣିକ…

ଊସ୍‌ମାନ୍ : (ଜୋର୍‌ଗଳାରେ) ଗୋପୀବାବୁ !

ଗୋପୀ : ଆରେ ଊସ୍‌ମାନ୍ ବାଈ, ତମେ ହଉଚ ଟଙ୍କାର ଗ୍ଦକର । ତମକୁ ଯିଏ ଟଙ୍କା ଦେବ…

ଊସ୍‌ମାନ୍ : ଆଜ ତମେ ଗୋପୀବଲ୍ଲଭ ହଉଚ ଖୋଦ୍ ଏ ଊସ୍‌ମାନ୍ ବାଈର ଗ୍ଦକର । ଭଲରେ ଗ୍ଦଲିଯାଅ, ତା’ ନହେଲେ…ଏ କଣନ୍‌ଲାଲ୍ !

ଗୋପୀ : କଣନ୍‌ଲାଲ୍ ! କଣନ୍ ମୋ ଦେହରେ ହାତ ଦେବ । କଣନ୍ ଜାଗାରେ ବାବୁ ଚନ୍ଦ୍ରମଣି ଏଠିକି ଆସିଲେ ବ…

[ଭିତରୁ ଚନ୍ଦ୍ରମଣି ଆସିଲେ ]

ଚନ୍ଦ୍ରମଣି : ହୁଁ ଅଟକଗଲା କାହିଁକି, ମୁଁ ତ ଆସିଲଣି, କୁହ ।

ଗୋପୀ : ଓ-ଓ ! ଏଇଠି ତା’ହେଲେ ଦୋଳଛୁଟିଟା କଟୁଚ !

ଚନ୍ଦ୍ରମଣି : ଶୁଣ ଗୋପୀବାବୁ, ମୋର ଗୋଟିଏ ପ୍ରଶ୍ନର ଉତ୍ତର ତୁମେ ଦିଅ ।

ଗୋପୀ : କି ପ୍ରଶ୍ନ ?

ଚନ୍ଦ୍ରମଣି : ଏ ଘରର ମାଲିକ୍ କିଏ ?

ଗୋପୀ : ତୁମେ କିଏ ମୋତେ ଏ ପ୍ରଶ୍ନ ପଗ୍ଦରିବ ?

ଚନ୍ଦ୍ରମଣି : ତର୍କ କରନାହିଁ ଗୋପୀବଲ୍ଲଭ । ମୋ ପ୍ରଶ୍ନର ଉତ୍ତର ଦିଅ ।

ଗୋପୀ : ହଉ ହେଲା, ଏ ଘରର ମାଲିକ ଏ ବାଙ୍ଗାଳୀ ଉସ୍‌ମାନ୍ ଛାର ।

ଚନ୍ଦ୍ରମଣି : ସେଇ ଉସ୍‌ମାନ୍ ତମକୁ ହୁକୁମ୍ ଦେଇଛି, ତମେ ସୁନାପିଲାଟି ପରି ମାନେ-ମାନେ ତା' ଘର ଛାଡ଼ି ଚାଲିଯାଅ ।

[ଗୋପୀବଲ୍ଲଭ ଗୃହ ଦେଖିଲା ଘର ଭିତରେ କଣନ୍, ନୋକା ପ୍ରଭୃତି ଯଥା ସ୍ଥାନରେ ରହିଚନ୍ତି ]

ଗୋପୀ : ହଁ, ମୁଁ ଯାଉଚି । କିନ୍ତୁ ତୁମେ ଜାଣିରଖ ବାବୁ ଚନ୍ଦ୍ରମଣି, ଦିନେ ଏଇଘରୁ ମୁଁ ତମ ଗଳାରେ ଜୋତାମାଳ ପିନ୍ଧାଇ ତମକୁ ବାହାର କରିଦେବି ।

[ ଚାଲିଗଲେ । ଏମାନେ ସମସ୍ତେ ହସି ଉଠିଲେ ]

ଉସ୍‌ମାନ୍ : କ'ଣ ସେ ଏମିତି କହିଦେଇଗଲା ?

ଚନ୍ଦ୍ରମଣି : ବୁଝିପାରିଲନି ?

ଉସ୍‌ମାନ୍ : ସେ କ'ଣ ପରା ଜୋତାମାଳ ପିନ୍ଧିବା କଥା କହିଗଲା !

ଚନ୍ଦ୍ରମଣି : ଠିକ୍ କହିଚ ।

ଉସ୍‌ମାନ୍ : ଠିକ୍ କହିଚ ! ହଜୁର୍ ଆପଣ ଏକଥା କହୁଚନ୍ତି !

ଚନ୍ଦ୍ରମଣି : ହଁ ମୁଁ କହୁଚି । ଦିନେ ଏଇଘରେ ତୁ କଣନ୍‌ଲାଲ୍ ତା ଗଳାରେ ଜୋତାମାଳ ପିନ୍ଧାଇବୁ, ଏଇ ଦାବିଟା ସେ ଛାଡ଼ି ଦେଇଗଲା ।

[ଏଥର ସମସ୍ତେ ପୁଣି ହସି ଉଠିଲେ । ଚନ୍ଦ୍ରମଣି ପୁଣି ଭିତରକୁ ଗଲେ ]

ଉସ୍‌ମାନ୍ : ଟିକିଏ ଶୁଣିଲୁ କଣନ୍ (ଦୁହେଁ ଟିକିଏ ଦୂରେଇ ଯାଇ ଉପରୁ ହମ୍ପଗଳାରେ କଥାବାର୍ତ୍ତା କଲେ )

ଉସ୍‌ମାନ୍ : ଗୋପୀବଲ୍ଲଭ କହିଗଲା ଦୋକାନଟି ପରେ କଚେରୀ ଖୋଲିଲାଣି ।

କଶନ୍ : ହିଁ, କଚଣ୍ଡ଼ି ଖୋଲିଲାଣି ।

ଉସ୍‌ମାନ୍ : ଏଠି ରହି ବାବୁ ତା ଚାକିରି କଥା ଭୁଲିଗଲେଣି । ଏତେ ଭଲ ଆଉ ଏତେ ବଡ଼ ଚାକିରି !

କଶନ୍ : ଆମେ ଆଉ କ'ଣ କରିବା ?

ଉସ୍‌ମାନ୍ : ତାଙ୍କୁ ମନେପକେଇଦେବା ।

କଶନ୍ : ତାଙ୍କୁ ତ ମୁହେଁ ମୁହେଁ ଏକଥା କହିହବନି ।

ଉସ୍‌ମାନ୍ : ଯେମିତି ହେଲେ ତାଙ୍କୁ ଜଣେଇ ଦେବାକୁ ହବ । ମୋ ଘରେ ରହି ଯଦି ତାଙ୍କ ଚାକିରିରେ ବାଧା ପଡ଼େ···

[ଏତିକିବେଳେ ଚନ୍ଦ୍ରମଣି ପୁଣି ଆସିଲେ । ]

ଉସ୍‌ମାନ୍ : କ'ଣ ହେଲା ? ଉଠିଆସିଲ ଯେ ?

ଚନ୍ଦ୍ରମଣି : ନା, ନିଦ ହେଲାନି । ଏଇଠି ତମ ଗୀତ ଶୁଣୁଶୁଣୁ ତମର କୋଳରେ ମଥାରଖି ଶୋଇପଡ଼ିବି । କାଲି ତ ପୁଣି କଚଣ୍ଡ଼ି ଖୋଲିବ ।

କଶନ୍ : ହଜୁର୍ !

ଚନ୍ଦ୍ରମଣି : କ'ଣ କହୁଚୁ ?

କଶନ୍ : ହଜୁର୍ ମା' ବାପ୍, କଚଣ୍ଡ଼ି ଦଶ ତାରିଖରୁ ଖୋଲିଲାଣି, ଆଜି ବାର୍ ତାରିଖ୍ ।

ଉସ୍‌ମାନ୍ : (ଡରିଯାଇ) କ'ଣ ହବ ତେବେ ?

କଶନ୍ : ଆରେ ଦେବାଜୀ, ହଜୁର୍ ଜମିଦାର ଲୋକ । କଲିଟର ସାହେବ୍ ହଜୁର୍‌ଙ୍କୁ ଡାକି ଚାକିରି ଦେଇଚି । ହଜୁର୍‌ଙ୍କର କ'ଣ ହବ ?

ଚନ୍ଦ୍ରମଣି : ଠିକ୍ ଯେ, ଆଜି ନଜାରତରେ ମୋ' କାମ ଥିଲା । ଆଜି ତ ଆଉ ବେଳ ନାହିଁ !···ଠିକ୍ ଅଛି, ମୁଁ ଉଠେ ।

ଉସ୍‌ମାନ୍ : ଏଇ ସାଙ୍ଗେ ସାଙ୍ଗେ ଯିବ ?

ଚନ୍ଦ୍ରମଣି : ହଁ, ଆଜ ରାତିରେ କଚ୍ଛ ଫାଇଲ୍ ପତ୍ର କାମ କରିବ । (ଉସ୍‌ମାନ୍ ମୁହଁ ଶୁଖିଯାଉଥାଏ) କିନ୍ତୁ ଏ କ'ଣ ଚାରା, ତୁମେ ମୁହଁ ଶୁଖାଉଚ କାହିଁକି ? ନା-ନା, ତମ ଶୁଖିଲା ମୁହଁ ମୁଁ ଦେଖିପାରିବ ନାହିଁ—ନା ।

ଉସ୍‌ମାନ୍ : କିନ୍ତୁ ତୁମେ ? ତୁମେ ଏଠୁ ଖୁସି ମନରେ ଯାଉଚ ତ ?

ଚନ୍ଦ୍ରମଣି : ମତେ ଦେଖି ତୁମେ ବୁଝିପାରୁନ ? ମୁଁ ଖୁସି ଉସ୍‌ମାନ୍, ମୋର ମନ ଖୁସି—ପ୍ରାଣ ଖୁସି—ସବୁ ଖୁସି ।

[ଉସ୍‌ମାନ୍‌ଠୁ ବିଦାୟ ନେଇ ବାବୁ ବାହାରିଗଲେ]

[ଚନ୍ଦ୍ରମଣିବାବୁଙ୍କ କଟକ ଘର । ଉସ୍‌ମାନ୍ ବାଇ ଘରୁ ଫେରି ବାବୁ ଖୁବ୍ ଫୂର୍ତ୍ତିରେ ସୁସୁର ମାରି ଘର ଭିତରକୁ ଆସିଲେ । ଗୁମାସ୍ତା ନରହରି ଆସି ବାବୁଙ୍କୁ ସଭକ୍ତି ପ୍ରଣାମ ଜଣାଇଲା । ବାବୁ ଟିକେ ଅମକିଗଲେ, କିନ୍ତୁ ଆଉ ଭିତରକୁ ନଯାଇ ସେମିତି ଫୂର୍ତ୍ତିରେ ନରହରି ସହିତ କଥାବାର୍ତ୍ତା ଆରମ୍ଭ କଲେ]

ଚନ୍ଦ୍ରମଣି : ଆରେ ନରହରି, ତୁମେ କେତେବେଳେ ଆସିଲ ? ହଉ ଭଲ ହେଲା, ତମେ ଆସିଚ । ତୁମ ପାଖରେ ବହୁତ କାମ ଅଛି । ତୁମେ ରୁହ ।

[ନରହରି ଅନ୍ୟ ଆଡ଼କୁ ଗଲା । ବାବୁ ସେମିତି ଫୂର୍ତ୍ତି ମନରେ ଆଗେଇଲା ବେଳକୁ ଆସିଲା ମକର ]

ଚନ୍ଦ୍ରମଣି : ମକର !

[ମକର ଟିକେ ଗମ୍ଭୀର ଜଣାଯାଉଥାଏ]

ମକର : ଆଜ୍ଞା ।

ଚନ୍ଦ୍ରମଣି : କରେ ? ପାଟିରୁ କ'ଣ କଥା ବାହାରୁଛି, ଖାଇଛୁ ?...
ଡେଣେ କୁଆଡ଼େ ଯାଉଚୁ ?

ମକର : ବାକ୍ସଟା ଆଣିବ ।

ଚନ୍ଦ୍ରମଣି : ବାକ୍ସ ! କି ବାକ୍ସ ?

ମକର : ବୋଲ ମେଲଣକୁ ହଜୁର୍ ଗାଁକୁ ଗଲାବେଳେ ବାକ୍ସ ସାଙ୍ଗରେ
ଯାଇଥିଲା (ବାବୁ ହଠାତ୍ କିଛି କହିପାରିଲେନି) ବାକ୍ସଟା
ଆସିନାହିଁ ?

ଚନ୍ଦ୍ରମଣି : ପାଜି ବଦମାସ୍ ! ବାକ୍ସ ହିସାବ ମୁଁ ତତେ ଦେବି ?
(ଯାଉ ଯାଉ ଫେରି) ଯା ଗାଡ଼ିବାଲାକୁ ପଇସା ଦେଇ, ଆ' ।
ଫୁର୍ତ୍ତି ।

[ଗୁଣୁଗୁଣୁ ହୋଇ ଗୀତ ଗାଇ ଗୋଟାଏ କଣରେ ଯାଇ
ଜୋତା ଖୋଲିଲା ବେଳକୁ ଦେଖିଲେ ସା'ନ୍ତାଣୀ ସୁଲୋଚନା
ଭିତରୁ ଆସି ପ୍ରଣାମ କଲେ ]

ଚନ୍ଦ୍ରମଣି : ହୁଁ (ବାବୁଙ୍କ ମୁହଁର ଭାବ ବଦଳି ଯାଇଚି । କିନ୍ତୁ ସା'ନ୍ତାଣୀଙ୍କର
ମୁହଁରେ ଆନନ୍ଦ କି ଦୁଃଖ କୌଣସିଟିର ଅଘଥା ଗ୍ରୁଚ ନାହିଁ )
ବାପା ଆସିଚନ୍ତି ?

ସୁଲୋଚନା : ହଁ, ତମକୁ ଦେଖି ମୁଁ ଏଠିକି ଚାଲିଆସିଲି । ତମେ ବାପାଙ୍କୁ
ଦେଖାକରି ଲୁଗାପଟା ବଦଳି ଆସ । ସଞ୍ଜ ଗଡ଼ିଗଲାଣି, ମୁଁ
ଜଳପାନି ବାଢ଼ୁଚି ।

ଚନ୍ଦ୍ରମଣି : ଆଜି ଦିନ ଗାଡ଼ିରେ ଆସିଲେ ?

ସା'ନ୍ତାଣୀ : ହଁ ।...ମୁଁ ରନ୍ଧାଘରକୁ ଯାଉଚି ।

[ ସା'ନ୍ତାଣୀ ଚାଲିଗଲେ ]

ଚନ୍ଦ୍ରମଣି : ହୁଁ । [ଟିକେ ରହି ଅଦୃଶ୍ୟ ହୋଇଗଲେ । କିଛିକ୍ଷଣ ପରେ ଜମିଦାର ଶ୍ୟାମ ପଟ୍ଟନାୟକ ସେ ଘରକୁ ଆସି ଗୋଟିଏ ସାଦା ଖଟ ଉପରେ ବସିଲେ ]

ଶ୍ୟାମ : (ଡାକଲେ) ନରହରି, କାଗଜପତ୍ର ସବୁ ଏଠିକି ଆଣ ।

[ ନରହରି ନଥିପତ୍ର ଆଣି ରଖିଦେଇ ଗଲା । ଟିକିଏ ପରେ ଚନ୍ଦ୍ରମଣି ଆସି ବାପାଙ୍କୁ ପ୍ରଣାମ କଲେ । ଏଇ ଘରର ଗୋଟିଏ କଣରେ ଲଫାଫା ବଡ଼ ଟେବୁଲ୍ ପଡ଼ିଛି ]

ଶ୍ୟାମ : ସବୁ ଭଲ ?

[ ଏ ପ୍ରଶ୍ନରେ ବାବୁ ଇତସ୍ତତଃ ହୋଇପଡ଼ି ତଳକୁ ମୁହଁ ପୋତିଲେ ]

ଶ୍ୟାମ : ଜଳପାନ କରିଛନ୍ତି ?

ଚନ୍ଦ୍ରମଣି : ମୁଁ ଏବେ କିଛି ଖାଇବ ନାହିଁ ।

ଶ୍ୟାମ : ହୁଁ ।

ଚନ୍ଦ୍ରମଣି : ମୁଁ ଜାଣିଥିଲି ଆପଣ ଆସିବେ ।

ଶ୍ୟାମ : ଆଜ ମୁଁ ଜାଣିଥିଲି, ଆମେ ସବୁ ଏଠିକି ଆସିଲାବେଳେ ତୁ ଘରେ ନଥିବୁ ।

[ କିଛି ସମୟ ଦୁହେଁ ନୀରବ ]

ଶ୍ୟାମ : (ଡାକଲେ) ମଲ୍ଲୀମା ! (ପ୍ରୌଢ଼ାଦାସୀ ମଲ୍ଲୀମା ଆସି କାନ୍ଥ ଉହାଡ଼ରେ ଠିଆହେଲା)

ମଲ୍ଲୀମା : ସା'ନ୍ତେ !

ଶ୍ୟାମ : ବୋହୂ କ'ଣ କରୁଛି ?

ମଲ୍ଲୀମା : ଶୋଇଘରେ ଅଛନ୍ତି ।

ଶ୍ୟାମ : ତାକୁ କହ, ଏ ପାଖ ଘରକୁ ଆସୁ ।

[ ମଲ୍ଲୀମା ଚାଲିଗଲା । ଟିକଏ ପରେ ଜମିଦାର ଉଠିଯାଇ ପାଖଘର ଓ ଏ ଘରକୁ ସଂଯୁକ୍ତ କରୁଥିବା କବାଟ ଖୋଲି-ଦେଲେ ··ମଲ୍ଲୀମା ସେଇ କବାଟ ପାଖକୁ ଆସିଲା ]

ମଲ୍ଲୀମା : ବୋହୂ ସାଂନ୍ତାଣୀ ଏ କବାଟ ଧାରକୁ ଆସିଲେଣି ସାଂନ୍ତେ । (ଚନ୍ଦ୍ରମଣି ସେଠୁ ଚାଲିଯାଉଥିଲେ )···ତୁ କୁଆଡ଼େ ଯାଉଚୁ ? ତୁ ଏଇଠି ରହ ।

[ ମଲ୍ଲୀମା ଚାଲିଯାଇଚ । ଏ ଘରେ ଶ୍ୟାମ ଓ ଚନ୍ଦ୍ରମଣି— ଘର କବାଟ ଉହ୍ଲାଡ଼ରେ ସାଂନ୍ତାଣୀ । କବାଟ ଖୋଲା ]

ଶ୍ୟାମ : ତୋ ସାଙ୍ଗରେ ମୋର କେଇପଦ କଥାଭାଷା ଅଛି । ଆଜ ଏ କଥାଭାଷା ବେଳେ ବୋହୂ ସେ କବାଟ ସେପାଖେ ରହିବ । (ଚନ୍ଦ୍ରମଣି ଏ କଥାରେ ମୁହଁ ଟେକି ବାପାକୁ ଚାହିଁଲେ) ·· ହଁ, ମୁଁ ଚାହେଁ ଆମ କଥାବାର୍ତ୍ତା ସବୁ ବୋହୂ କାନରେ ପଡ଼ୁ । (ଟିକେରହି) ଦୋଳ ମେଳଣକୁ ତୁ ଘରକୁ କାହିଁକି ଗଲୁନାହିଁ, ତାର କୈଫିୟତ୍ ଆମର ଦରକାର ନାହିଁ ।··· ବୋହୂର ପାଞ୍ଚସରିଆ ହାର ତିଆରି ପାଇଁ ଗୁମାସ୍ତା ପନ୍ଦର ଭରି ସୁନା ଆଉ ଟଙ୍କା ଆଣି ତୋ ଜମା ଦେଇଥିଲା···

[ ଏ କଥାରେ ଚନ୍ଦ୍ରମଣି ମୁହଁ ତଳକୁ କରି ବସି ଭାରି ଅଶ୍ୱସ୍ତି ବୋଧ କରୁଥାନ୍ତି ]

ଶ୍ୟାମ : ସେ ହାରର ହିସାବ ଆମେ ଚାହୁଁନୁ, ଆମେ ଜାଣୁ ସେ ହାର ଆଉ ନାହିଁ···ଆଜ ନାଜରଖାନା ଚପରାସୀ ଦୁଇଥର ଆସି ଖୋଜିଯାଇଚ । ଆମେ ଆସିବା ଆଗରୁ ଥରେ ଆସି-ଥିଲା—ଆସିବା ପରେ ପୁଣି ଆସିଥିଲା ।

ଚନ୍ଦ୍ରମଣି : ମୁଁ କାଲି କଚେରୀ ଯାଇ ସେକଥା ବୁଝିବି ।

ଶ୍ୟାମ : କୋର୍ଟ ଅଫ୍ ଓ୍ୱାର୍ଡ୍ସ୍‌ର ଏ କର୍ଜି ଟଙ୍କା ଦୋଳଛନ୍ତି ସେ ପାଖରୁ ପେଠ ହବାର କଥା ଚ ?

ଚନ୍ଦ୍ରମଣି : ହଁ ।

ଶ୍ୟାମ : ତୁ କୋର୍ଟ ଅଫ୍ ଓ୍ୱାର୍ଡ୍ସ୍‌ର ଅଫିସର୍—କର୍ଜି ଟଙ୍କାର ଜମାଦାର୍ ତୁ ।

ଚନ୍ଦ୍ରମଣି : ହଁ ।

ଶ୍ୟାମ : ଛୁଟିପରେ କଚେରୀ ଖୋଲିଲାଣି, ଏ ଯାଏ ଟଙ୍କା ପେଠ ହେଇ ନାହିଁ ।

ଚନ୍ଦ୍ରମଣି : ଟଙ୍କା···

ଶ୍ୟାମ : ଟଙ୍କା ଅଛି ?

ଚନ୍ଦ୍ରମଣି : ଟଙ୍କା···ମୁଁ କାଲି କଚେରୀ ଯାଇ ଟଙ୍କା କଥା ବୁଝିବି ।

ଶ୍ୟାମ : ମୁଁ ପଚାରୁଚି ଟଙ୍କା ଅଛି ?

ଚନ୍ଦ୍ରମଣି : (ନିରୁତ୍ତର )

ଶ୍ୟାମ : ମୁଁ ଜାଣେ, ସେ ଟଙ୍କା ନାହିଁ । ଆଉ କାଲି କଚେରୀ ଯାଇ ଚୋର ବୁଝିବାକୁ ମଧ୍ୟ କିଛି ବାକି ନାହିଁ ।···ଆଜି ଟଙ୍କା ପେଠ ହେଇଯାଇଚି ।

ଚନ୍ଦ୍ରମଣି : (ସ୍ତମ୍ଭୀଭୂତ ହେଇ) ପେଠ ହେଇଚି !!

ଶ୍ୟାମ : ହଁ, ଆମେ ଆଜି ନଜାରତରେ ସବୁ ଟଙ୍କା ପେଠ କରି-ଦେଇଚୁ । ତା' ନହେଲେ ଏଇଟା ଚୋରପାଡ ମାମଲ୍ ହେଇଥାନ୍ତା ।···ହଁ ଆଉ ଗୋଟାଏ କଥା—କାଲଠୁଁ ଚୋର ଆଉ ଘରକୁ ନାହିଁ ।

[ ଚନ୍ଦ୍ରମଣି ଏକାବେଳକେ ହତାଶ ହେଇ ରହିଗଲେ ]

ଶ୍ୟାମ : ଆଜ ରାତରେ ଇସ୍ତଫା ପତ୍ର ଲେଖିରଖ, କାଲି କଚେରୀରେ ଦାଖଲ ହବ । ...ଜମିଦାର ଘର ପିଲା ଚାକରିର ଲୋଭ଼ା ବା କ'ଣ ଥିଲା ? ହେଲେ କପାଳ ଲିଖନ —ସେଇ ପାଠପଢ଼ା ଧନୁ ସଙ୍ଗଦୋଷ—ଜଣାପାଣି ବାହାକଥା । କାଳେ ମନ ଫେରିଯିବ, ଏଇ ଆଶାରେ କୁଳୀନ ଶ୍ରୀକରଣ ଘରୁ ଲକ୍ଷ୍ମୀବୋହୂ ଆଣିଲି—କଲେକ୍ଟର ସାହେବଙ୍କୁ ବୁଝାଇ କୋର୍ଟ ଅଫ୍ ଓ୍ୱାର୍ଡ଼ସ୍‌ରେ ଇନ୍‌ସ୍ପେକ୍ଟ ଅଫିସର୍ ଚାକିରି କରେଇ ଦେଲି । ହେଲେ ସ୍ୱଭାବ ଚରିତ୍ର କିଛି ବଦଳିଲା ନାହିଁ ।...ଯୋଉ କଲେକ୍ଟର ସାହେବଙ୍କ କଥାମତେ ଚାକିରି ହେଇଥିଲା, ତାଙ୍କରି ପରାମର୍ଶରେ ଚାକିରି ଛାଡ଼ିବାକୁ ପଡ଼ିଲା ।

[ ଏଇ ଦୃଶ୍ୟଟି ଚାଲିଥିଲା ବେଳେ କବାଟ ଉହାଡ଼ରୁ ସାନ୍ତାଣୀଙ୍କର ଶାଢ଼ୀ ସହିତ ହାତର କିଛି ଅଂଶ ଦର୍ଶକ-ମାନଙ୍କର ଦୃଶ୍ୟମାନ ହେଇପାରିଲେ ଭଲ ]

ଶ୍ୟାମ : ଏ ହବୁ ତ ହେଲା । ଏବେ ଗାଁ'କୁ ଯିବ ନା ଏଇଠି ରହିବ ? ...କ'ଣ, ଗାଁକୁ ଯିବ ?

ଚନ୍ଦ୍ରମଣି : ନା ।

ଶ୍ୟାମ : ଅମେ ମଧ୍ୟ ହେଇଟା ଚାହୁଁ । ଜାଣି ତ କୋଉ କାଳରୁ ଗାଁ'କୁ ଯିବା ହଉନାହିଁ । ଏ ଅବସ୍ଥାରେ ଯାଇ ଅପଦସ୍ଥ ହବ କାହିଁକି ? ...ବୋହୂ ଏଣିକି ଏଠି ରହିଲା । ଏଇଠି ରହି ଜମିଦାରୀ ହାଲ୍ ବୁଝ । ଗୁମାସ୍ତାମାନେ ମାସକୁ ମାସ ରେକର୍ଡ଼ପତ୍ର ଆଣି ବୁଝାଇଦେଇ କରି ଯାଉଥିବେ । ପିଆଦା ପାଇକମାନେ ସବୁ ସରଞ୍ଜାମ ଆଣି ପହଞ୍ଚଉ ଥିବେ—ଅସୁବିଧା କିଛି ନାହିଁ ।...ବାସ୍ । ଏତିକି ଆମର କହିବାର

ଥିଲ । ଏଣିକ ଆମର ଛୁଟି । ଠାକୁରେ ତମକୁ ଭଲବୁଦ୍ଧି ଦିଅନ୍ତୁ ।

[ଶ୍ୟାମ ଦୁଇହାତ ଯୋଡ଼ି ମଥାରେ ଲଗାଇ କିଛିକ୍ଷଣ ସେଇ ଅବସ୍ଥାରେ ରହିଲେ ]

ଶ୍ୟାମ : (ଡାକଲେ) ନରହର୍...ନରହର !

ନରହର : (ଭିତରୁ) ଆଜ୍ଞା ।

ଶ୍ୟାମ : ଏଠିକି ଆସ ।

[ ଚନ୍ଦ୍ରମଣି ଉଠି ଚାଲିଗଲେ । ଟିକିଏ ପରେ ନରହର ଆସିଲା ]

ଶ୍ୟାମ : ଓକିଲବାବୁଙ୍କ ସିଉସ୍ତାଁକୁ କେତେବେଳେ ଯିବାର କଥା ?

ନରହର : ଏଇ ରାତ ସାଢ଼େ-ସାତ ଆଠ ଭିତରେ ।

ଶ୍ୟାମ : ମଙ୍ଗରାକୁ କହ ଗାଡ଼ି ଡାକୁ, ଆମେ ଯିବା ।

[ ପୂର୍ବବର୍ତ୍ତୀ ଦୃଶ୍ୟର ତିନି ଘଣ୍ଟାପର ଘଟଣା । ସମସ୍ତ ପୂର୍ବାହ୍ଣ । କୁଆଡ଼େ ବାହାରକୁ ଯିବେ ବୋଲି ଶ୍ୟାମ ପ୍ରସ୍ତୁତ ହୋଇ ସେଇ ଘରେ ପଦଚାରଣା କରୁଚନ୍ତି । ଟିକିଏ ପରେ କିଛିଟା ସଙ୍କୋଚ ସହ ସୁଲୋଚନା ଆସିଲେ ]

ସୁଲୋଚନା : ମତେ କ'ଣ କହିବେ ବାପା ?

ଶ୍ୟାମ : ହଁ । ତୋର ମେଲଣ ଦିନ ଗାଁରେ ଯାହା ତତେ କହିଥିଲି !...ଗୋଟାଏ ଅମଣିଷକୁ ମଣିଷ କରିବା ଭଳି ମନର ବଳ ତୋର ଅଛି । ଆଜି ସେତିକି କଥା ତୋତେ ଚେତାଇ ଦେଇ, ସେଇ ଆଶୀର୍ବାଦ କରି ମୁଁ ଗାଁ'କୁ ଫେରିଯାଉଚି ।...ହଁ ନେ—ଏଇଟା ରଖ ।

[ ଜାମା ପକେଟରୁ ଗୋଟିଏ ଦଲିଲ୍ ବାହାର କରି ବୋହୂ ହାତକୁ ବଢ଼ାଇ ଦେଲେ । ଦଲିଲ୍‌ଟି ହାତରେ ଧରି ସେ ପ୍ରଶ୍ନଭରା ଦୃଷ୍ଟିରେ ଶ୍ୱଶୁରଙ୍କୁ ଥରେ ମାତ୍ର ଚାହିଁ ପୁଣି ଦୃଷ୍ଟି ତଳକୁ କଲେ ]

ଶ୍ୟାମ : ଜମିଦାର ଘର ଝିଅ ତୁ, ଜମିଦାର ଘର ବୋହୂ । ଏ ପାଠ ତ ତତେ ଅଜଣା ନୁହେଁ । ଟିକିଏ ଆଖି ବୁଲେଇ ଆଣିଲେ ଜାଣିପାରିବୁ ଏଇଟା କ'ଣ ଦଲିଲ୍ !

[ ସା'ନ୍ତାଣୀ ଦଲିଲ୍‌ଟା ଉପରେ ଥରେ ଆଖି ବୁଲାଇ ଆଣି ବିସ୍ମିତ ତଥା ଆହତ ଦୃଷ୍ଟିରେ ଜମିଦାରଙ୍କୁ ଚାହିଁଲେ ]

ଶ୍ୟାମ : ତୁ ନିଜେ ଦେଖିଲୁ, ନିଜେ ଜାଣିଲୁ । ଏଇ ଜମିଦାରୀ ବଂଶରେ ଜନ୍ମ ହୋଇ, ମୋର ପୁଅ ହୋଇ ସେ ମଣିଷ ହୋଇ ରହିପାରିଲା ନାହିଁ । ଏଥିରେ ମୋର ଆଉ କିଛି ଦୁଃଖ ନ ଥିଲା ମା' । (ସା'ନ୍ତାଣୀଙ୍କ ଆଖିରେ ଦୁଇ ଟୋପା ଲୁହ) ତୋ ଆଖିରେ ଲୁହ !···ତୋ ମନର ବଳ, ମନର ଦମ୍ଭ ଦେଖିଥିଲି । ତୋ ଆଖିରେ ଲୁହ କେବେ ଦେଖି ନଥିଲି । ଏ ଦ'ଟୋପା ଲୁହର ତାତ୍ପର୍ଯ୍ୟ କ'ଣ ମୁଁ ବୁଝିକି ଜାଣୁ ? ଏ ଲୁହ ଦ' ଟୋପା ଏ ଦଲିଲ୍‌ଟାର ମର୍ଯ୍ୟାଦା ରକ୍ଷା କରିବ । (ଟିକେ ନମ୍ର ସ୍ୱରରେ) ହଁ, ଏ ଦଲିଲ୍ କଥା ଚନ୍ଦ୍ର ଜାଣିନି—ଆଉ କେହି, ଏମିତି କି ମୋର ଅତି ବିଶ୍ୱାସୀ ଗୁମାସ୍ତା ନରହରି ବି ଏକଥା କିଛି ଜାଣିନାହିଁ । ଏଇଟାକୁ ତୋ' ହାତରେ ଦେଇ ମୁଁ ନିଶ୍ଚିନ୍ତ ।···ମୁଁ ଯାଉଚି ।

[ସୁଲୋଚନା ଦଲିଲ୍‌ଟାକୁ ମଥାରେ ଲଗାଇଲେ—ତା'ପରେ ଶ୍ୱଶୁରଙ୍କୁ ଭୂମିଷ୍ଠ ପ୍ରଣାମ କରି ସେ ଘରୁ ବାହାରିଗଲେ ]

ଶ୍ୟାମ : ଆରେ ନରହରି କୁଆଡ଼େ ଗଲ ? କାଗଜପତ୍ର ସବୁ ବାକ୍ସକୁ ଉଠାଅ ।···ଚନ୍ଦ୍ର କାହିଁ ଗଲା—ଚନ୍ଦ୍ର···

(ଚନ୍ଦ୍ରମଣି ଆସିଲେ)

ଚନ୍ଦ୍ରମଣି : ମୁଁ କହୁଥିଲି ଆଜି ନ ଯାଇ ଆଉ ଦିନେ ଦି'ଦିନ ଏଠି ରହୁଥା'ନ୍ତେ ।

ଶ୍ୟାମ : ନାଇଁ, ନାଇଁ । ଧନକ ପାଇଁ ଆସି ଘୃବଦ୍ଧନ ହେଇଗଲା । କହୁଚ ତସ୍ ଏଣିକ ଆମର ଛୁଟି—ଏଣିକି ଆମେ କ୍ଷେତ୍ରବାସୀ ହେବୁ ।

ଚନ୍ଦ୍ରମଣି : ସତରେ ଆପଣ ପୁରୀ ଘରେ ଯାଇ ରହିବେ ?

ଶ୍ୟାମ : ସେଇ ମାନସିକ ତ ରହିଚ । ଖାଲି ଜଗନ୍ନାଥଙ୍କ ଡୋର ଲାଗିଲେ ହେଲା । (ଚନ୍ଦ୍ରମଣି ପ୍ରଣାମ କଲେ) ଗୋଟିଏ କଥା କହିଯାଉଚ—ପାରିବୁ ତ ମନେ ରଖିବୁ ।...ଆମମାନଙ୍କ ଘରେ, ସ୍ତ୍ରୀ ଯେଉଁ ସ୍ୱାମୀ ଉତ୍ତ. ବଳୁଷ୍ଟ, ସେ ସ୍ୱାମୀ ସବୁ ଦେବତାଙ୍କର ବର ଲାଭ କରେ ।

[ ଶ୍ୟାମ ଓ ପଛେ ପଛେ ଚନ୍ଦ୍ରମଣି ଦୁହିଁଙ୍କର ପ୍ରସ୍ଥାନ ]

[ ଚନ୍ଦ୍ରମଣିବାବୁଙ୍କ ବୈଠକ ଘର । ସୁନ୍ଦର ସେଇ କୋଠରି । ସମସ୍ତ ଅପରାହ୍ଣ । ପୂର୍ବ ଦୃଶ୍ୟର କିଛି ଦିନ ପରର କଥା । ହାତରେ ଗୁଆ ସରଞ୍ଜାମ ନେଇ ସୁଲୋଚନା ଏ ଘରକୁ ଆସିଲେ । ଗୁଆ କାଟିବାକୁ ଆରମ୍ଭ କରିଚନ୍ତି ସେଠିକି, ସୁନା ପିଲାଟି ପରି ଆସିଲେ ଚନ୍ଦ୍ରମଣି । ଗୋଟିଏ ହାତରେ ଗୋଟିଏ ରୁପା ଥାଳି ଭର୍ତ୍ତି ବିଭିନ୍ନ ପ୍ରକାରର ପିଠା ଓ ଅନ୍ୟ ହାତରେ ଗୋଟିଏ ପାଣିଭର୍ତ୍ତି ରୁପାଗ୍ଲାସ । ବାବୁଙ୍କ କଥାବାର୍ତ୍ତା ଓ ଗୁଲିଚଳନରେ ସେ ଏକାବେଳକେ ଭଲ ଲୋକ ହେଇଗଲେଣି ବୋଲି ସେ ଜଣାଇ ଦେଉଥା'ନ୍ତି, କିନ୍ତୁ ଏସବୁ ଯେ ଛଳନା ଏ କଥା ସା'ନ୍ତାଣୀ. ବେଶ୍ ବୁଝିପାରୁଚନ୍ତି । କିନ୍ତୁ ସା'ନ୍ତାଣୀ ପୂର୍ବପରି ଧୀର ଓ ଗମ୍ଭୀର, ମାଝ ବାବୁଙ୍କ ସଙ୍ଗ କଥାବାର୍ତ୍ତାରେ ରେଡ଼୍ଠୋକ୍ ]

ସୁଲୋଚନା : ଏ କ'ଣ : ମୁଁ ସେ ପାଖରେ ଆସନ ପକାଇ ପିଠାଥାଳ ବାଢ଼ି ପାଣି ଦେଇ ଆସିଲି, ତୁମେ ଆସି ଏଠି ହାଜର ହେଲଣି ?

ଚନ୍ଦ୍ରମଣି : ଶୁଣ, ତୁମ ପଛେ ପଛେ ତୁମେ ଯେଉଁଠିକି ଆସିଲ ମୁଁ ସେଠିକି ଆସିଲି, ଆଉ କୁଆଡ଼େ ଯାଇନାହିଁ ।

ସୁଲୋଚନା : ଚାଲିଲ ତୁମେ ।

ଚନ୍ଦ୍ରମଣି : ସେ ପାଖକୁ ଫେରିଯିବା କଥା କହୁଚ ତ ?

ସୁଲୋଚନା : ହଁ ।

ଚନ୍ଦ୍ରମଣି : ଭଲ କଥା । ତମେ ଆଗେ ଆଗେ ଚାଲ, ମୁଁ ତମ ପଛେ ପଛେ ଯିବି ।

ସୁଲୋଚନା : ଏ ଘରେ ଟିକେ ପବନ ହେଉଛି ବୋଲି ଏଠି ବସି ଗୁଆ ଦ'ଖଣ୍ଡ ଭାଙ୍ଗିବାକୁ ଆସିଲି ଯେ···

ଚନ୍ଦ୍ରମଣି : ଭଲ କଥା । ତୁମେ ଖଟ ସେ ମୁଣ୍ଡରେ ବସି ଗୁଆ ଭାଙ୍ଗ, ମୁଁ ଏ ମୁଣ୍ଡରେ ବସି ପିଠା ଖାଉଚି ।

ସା'ନ୍ତାଣୀ : କାହିଁକି ?

ଚନ୍ଦ୍ରମଣି : ଏଣିକି ତୁମେ ଯେଉଁଠି, ମୁଁ ସେଇଠି । ମୁହୂର୍ତ୍ତେ ଛାଡ଼ିବାଡ଼ ନାହିଁ ।

ସୁଲୋଚନା : (ସବୁ ବୁଝିପାରି) ହଉ ହେଲା, ତମରି କଥା ରହିଲା ।

[ଖଟର ଗୋଟିଏ ପାଖରେ ସୁଲୋଚନା ବସି ଗୁଆ ଭାଙ୍ଗିଲେ ଓ ଅନ୍ୟ ପଟରେ ବାବୁ ବସି ପିଠା ଖାଇଲେ ]

ଚନ୍ଦ୍ରମଣି : ହେଁ-ହେଁ-ହେଁ···ଏ ସବୁ ପିଠା ଭାରି ମିଠା ।

ସୁଲୋଚନା : କ'ଣ ? ସବୁ ପିଠା ମିଠା ?

ଚନ୍ଦ୍ରମଣି : (ଉପର ମନରେ ଖୁସି ଭାବ) ହଁ ହଁ, ସବୁ —ସବୁ ପିଠା ମିଠା, ଖାଲି ମିଠା ।

[ ସାଁନ୍ତାଣୀ ବୁଝିପାରଲେ ତାଙ୍କ ମନ ତୁଷ୍ଟି ପାଇଁ ଏ ସବୁ କଥା କୁହାଯାଉଛି ]

ସୁଲୋଚନା : ଚୁଞ୍ଚିପଟର, କାକରା—ଏଥିରେ ଗୁଡ଼ କନ୍ଦ ଦିଆଯାଇ ମିଠା ହେଲା । ହେଲେ ଖାଉଳ ବରା ବଟାହୋଇ ସରୁ ଚକୁଳି ଯେ ହୋଇଛି, ତାହିଁକି ମିଠା କୁଆଡ଼ୁ ଆସିଲା ?

ଚନ୍ଦ୍ରମଣି : କହିଲି କି ? ସରୁ ଚକୁଳି ମିଠା ବୋଲି କହିଲି କି ? (ଏଥିରେ ସାଁନ୍ତାଣୀ କିଛି ନ କହି କେବଳ ନୀରବ ହସ ହସିଲେ) ବୁଝିଲି ବୁଝିଲି । ଯୋଉ ପିଠାରେ ମିଠା ଦିଆହୋଇଛି ସିଏ ତ ଜାଣି ମିଠା । ଆଉ ଯୋଉ ସବୁ—ଏଇ ଚକୁଳି ଚଟୋଉ—ଏସବୁ ପିଠା (ମୁଗ୍ଧ ହେଲାଭଳି ସ୍ୱରରେ) ହାତ ଗୁଣରୁ ମିଠା ।

ସୁଲୋଚନା : (ହସି ପକେଇ) କାହା ହାତ ?

ଚନ୍ଦ୍ରମଣି : (ଖୁବ ଉତ୍ସାହରେ ସାଁନ୍ତାଣୀଙ୍କୁ ଲକ୍ଷ୍ୟ ରଖି) ଯିଏ ପିଠା କରିଛି, ତା' ହାତ ।

[ ଚନ୍ଦ୍ରମଣିଙ୍କ ଭୋଜନ ଶେଷ ହୋଇଛି । ଦାସୀ ଆସି ବାସନ ଉଠାଇନେଲା ]

ସୁଲୋଚନା : (ବାବୁଙ୍କ କଥା ସବୁ ବୁଝିପାରି) ହୁଁ, ଭଲ ହେଲା-ଆଚ୍ଛା ହେଲା । ତା'ର ଦରମା ବଢ଼େଇ ଦିଅ ।

ଚନ୍ଦ୍ରମଣି : କାହା ଦରମା ?

ସୁଲୋଚନା : ତମ ପୂଝାରୀ, ସେଇ ତ ପିଠା କରିଛି ।

ଚନ୍ଦ୍ରମଣି : ହେଃ-ହେଃ-ହେଃ ତୁମେ ପରିହାସ କରୁଛ !

ସୁଲୋଚନା : ବୁଝିଲ, ମୋର ସବୁ କଥାକୁ ଏମିତି ଉପହାସ କଲେ ତମକୁ କହିବାକୁ ମୋ ପାଟିରେ ଆଉ କଥା ନଥିବ ।

[ ସା'ନ୍ତାଣୀ କୋଠରିର ଅନ୍ୟ ପଟରେ ଥିବା ଟେବୁଲ ପାଖକୁ ଯାଇ କ'ଣ ଦେଖୁଚନ୍ତି । ବାବୁ ତାଙ୍କ ପାଖରୁ ବେଶ୍ କିଛି ଦୂରେଇଯାଇ ମନକୁ ମନ ଗୁଣୁଗୁଣୁ ହେଉଥା'ନ୍ତି ]

ଚନ୍ଦ୍ରମଣି : (ମନକୁ ମନ) ଝିଅଟିକୁ ଦିଟା କଥାରେ ଯେତେ କିଛି କହି ତା' ମନ କିଣିନେଇ ମୋ ଦେଖିଲା କାମ ମୁଁ କରିଥା'ନ୍ତି । ହେଲେ ସେ ସବୁ ବାଏଁ ବାଏଁ ଉଡିଗଲା । କେମିତି ସ୍ତ୍ରୀ' ମନ ନେବ ? ଉସ୍ମାନ୍ ତେଣେ ମୋ ବାଟ ଚାହିଁ ବସିଥିବ । (ସା'ନ୍ତାଣୀଙ୍କୁ ଦେଖି) ହେ ହେ ସେଠି କଣ କରୁଚ ? (ନିଜେ ଟେବୁଲ ପାଖକୁ ଗଲେ) କ'ଣ କରୁଚ ଏଠି ?

ସୁଲୋଚନା : ନାଇଁ ଯେ, ଏ ମେଜଟା କାହିଁରେ କଣ ଜଳିଆ ହେଇ ପଡ଼ିଚି ।...ହୁଁ, ଏ ମେଜରେ କେଉଁଟା ଦରଜ କି ?

ଚନ୍ଦ୍ରମଣି : ସେ'ଟା, ସେ'ଟା ଡ୍ରୟାର ତ ! ଏ ପାଖରେ ଗୋଟାଏ, ଅଉ ହେଇ ଏ ପାଖରେ ଗୋଟାଏ ।

ସୁଲୋଚନା : ଆଉ ଏ ମଝିରେ ?

ଚନ୍ଦ୍ରମଣି : (ହଡ଼ବଡ଼େଇ) ମଝିରେ ? ମଝିରେ ଆଉ କଣ ! କିଛି ନାହିଁ । ଖାଲି ଏ ଆଡ଼ ଧାରଣା କାଠ ।

ସୁଲୋଚନା : ହଁ ଯେ, ସେଇ ଅଡ଼ ଧାରଣା କାଠରେ ଏ ଜାଗାଟା ଏମିତି ଘଷରା ଦିଶୁଚି ।...ଏଁ ! ଏ ପ୍ଲେଟ କାଠ ଖଣ୍ଡକ କ'ଣ ଏଠୁ ଘୁଞ୍ଚିଗଲା ! ଏ ମଝିରେ ତ ଏଠି ଆଉ ଗୋଟିଏ ଡ୍ରୟାର ଅଛି ! ହଇଓ, ସେଠି ଏ ଦରଜଟା...

ଚନ୍ଦ୍ରମଣି : (ଧଡ଼ପଡ଼ ହୋଇ) ଏ-ଏ ଦରଜ ! କଥା କଣ କି, ଏମିତିକା ମେଳମାନଙ୍କରେ ଏମିତିକା ଗୋଟାଏ ଗୋଟାଏ···ଗୋଟାଏ ଗୋଟାଏ···

ସୁଲୋଚନା : କ'ଣ ?

[ ବାବୁ ବୋକାଙ୍କ ପରି ସୁଲୋଚନାଙ୍କ ମୁହଁକୁ ଚାହିଁରହି କହିଲେ···]

ଚନ୍ଦ୍ରମଣି : (ଛେପ ଢୋକି) ଗୋଟାଏ ଗୋଟାଏ···

ସୁଲୋଚନା : ଲୁଭ ଦିଆ ଦରଜ ? ଏଇଆ ନା ? ଏଇଟା ପାଇଁ କଣ ବଡ଼େଇ କାରିଗର ପଇସା ନେଇନି ?

ଚନ୍ଦ୍ରମଣି : ଦେଖନ୍ତୁ, ବଡ଼େଇ ବାପୁଡ଼ା ଏମିତି ଢଙ୍ଗରେ ଉସ୍ତାଦିଟା କରିଛି, ଏଠି କାହାରି ଆଖି ପଡ଼ିବନି ।

ସୁଲୋଚନା : (କଟାକ୍ଷରେ ଚାହିଁ) ଖାଲି ଯାହା ମୋର ଆଖି ପଡ଼ିଲା !

ଚନ୍ଦ୍ରମଣି : ହେଃ-ହେଃ-ହେଃ (ରାଣୀ ଦରଜଟି ଟାଣିଲେ) ଆହା, ଥାଉ ଥାଉ । ଭିତରଟା ସାରା ଅଳିଆ ହୋଇଥିବ ! (ରାଣୀ ବାବୁଙ୍କ କଥାରେ କର୍ଣ୍ଣପାତ ନ କରି ଦରଜଟାକୁ ଅଧା ଖୋଲିଦେଲେ)

ସୁଲୋଚନା : ଆରେ ! ଇଏ ଏଠି କେତେ ରଙ୍ଗର କେତେ ଢଙ୍ଗର ଚଲମ ଅଛି ! (ଚଲମ ସବୁକୁ ବାହାର କରି ସେ ଟେବୁଲ ଉପରେ ରଖୁଥା'ନ୍ତି) ଏମିତି ଏତେ ଜାତିର ଚଲମ ତ କୋଉ ଚଲମ ଗୋଦାମରେ ନଥିବ ! (ଗଣିଲେ) ଏକ, ଦୁଇ, ତିନି, ଚାରି, ପାଞ୍ଚ···

ଚନ୍ଦ୍ରମଣି : (ଅସହାୟ ହୋଇ) ହେଇଟି ଶୁଣ ଶୁଣ । ଆମ ଏ ସାଇ ବସ୍ତିରେ ଜଗନ୍ନାଥ ମେଳାମାନ ହୁଏ । ଭାରି ଘମାଘୋଟିଆ

ମେଳା । ଆଜ ଜାଣିଥିବ ତ, ହିନାଥ ମେଳାର ଆଦ୍ଧ ମାତ୍ର ହେଲା ଗଞ୍ଜେଇ ଭୋଗ ।...ଗଞ୍ଜେଇ ଲାଗି ନ ହେଲେ...

ସୁଲୋଚନା : ଜାଣେ । ସାଇ ବସ୍ତିରେ ଗଞ୍ଜେଇ ଲାଗି ହେଇ ଚିଲମ ଆସି ରହେ ଆମ ଘରେ, ଏଇ ଲାଭଦଆ ଦରଜରେ—ଯୋଉଠ ବାହାର ଆଖି ପଡ଼ିବନ ।...ଆଛା, ମୋ' କଥା ମାନିବ ?

ଚନ୍ଦ୍ରମଣି : (ଖୁବ୍ ଆଗ୍ରହରେ) ପଚ୍ଚୁରୁଚ ପୁଣି ! ତମ କଥା ମାନିବ ନାହିଁ ତ ଆଉ କାହାକଥା ମାନିବ ? କୁହ କ କଥା ?

ସୁଲୋଚନା : ବୈଠକଖାନା ଘର ଥାକରେ ଏ ଚିଲମ ସବୁକୁ ନେଇ ସଜେଇ ରଖ । ଇଏ ତ ଏଠି ପଚାଶିଟା ଚିଲମ ଅଛୁ । ମଝିରେ ଇଏ ବଡ଼ ଚିଲମଟା ରହିବ, ଦ'କଡ଼କୁ ଗ୍ରେଟ ଗ୍ରେଟ ଚିଲମ ଲମ୍ୱେଇ ଆଣିବ—ଠିକ୍ ମେଡ଼ ଢାଞ୍ଚାରେ । କେଡ଼େ ସୁନ୍ଦର ମାନିବ କହିଲ !

ଚନ୍ଦ୍ରମଣି : (ହତାଶ ହେଇ) ଏଗୁଡ଼ାକ ସବୁ ନେଇ କୂଅରେ ପକେଇ ଦେବ ।

[ ସୁଲୋଚନା ଡ୍ରୟାରଟାକୁ ସମ୍ପୂର୍ଣ୍ଣ ବାହାର କରି ଆଣି ପଦାରେ ରଖିଲେ । ବାବୁଙ୍କ ଆଖି ବୁଜି ହେଇଗଲା । ସା'ନ୍ତାଣୀ ଦରଜ ଭିତରକୁ ଗୁହିଁରହିଥା'ନ୍ତି ]

ସୁଲୋଚନା : କେଡ଼େ ସୁନ୍ଦର ରଙ୍ଗୀନ୍ କାଗଜର ଛପା ମଦ ହେଇଚ ! ଦେଖିବା ପାଇଁ ଚେପ୍ଟା, ମୁଁ ତ ଜାଣିପାରୁନାହିଁ ଏଗୁଡ଼ାକ କ'ଣ କ ବୋତଲ ? ଆଖି ଖୋଲି ଟିକେ ଦେଖିବଟି !

ଚନ୍ଦ୍ରମଣି : ଲୁଚେଇବ କାହିଁକି ? ଏ କେଇଟା ମଦ ବୋତଲ କେମିତି ଏଠି ରହିଯାଇଚ ।

ସୁଲୋଚନା : ଇଏ ପୁଣି କୋଉ ମେଳାରେ କୋଉ ଠାକୁରଙ୍କ ପାଖରେ ଭୋଗ ଲାଗେ ?

ଚନ୍ଦ୍ରମଣି : ଶୁଣ, ବାପା ତ ମୋ କଥା ସବୁ ତମକୁ କହିଯାଇ-ଥିବେ ।

ସୁଲୋଚନା : ତମେ ଆଗେ କହିବଟି, ଏ ବୋତଲ ସବୁ କୋଉଠି ସଜା ହୋଇ ରହିବ ?

ଚନ୍ଦ୍ରମଣି : ଆଉ ରହିବ ? ଚାଲ, ତମର ଆଖି ଆଗରେ ଏ ବୋତଲ ସବୁକୁ ଭାଙ୍ଗି ପାଉଁଶ ଗଦାରେ ଢାଳିବ ।

ସୁଲୋଚନା : ହଉ, ବେଳ ତ ଗଡ଼ିଗଲାଣି, ମନ୍ଦିର ଯାଇ ବଗି ଡାକି ଆଣ ।

ଚନ୍ଦ୍ରମଣି : କାହିଁକି ?

ସୁଲୋଚନା : ସଞ୍ଜ ହୋଇଆସିଲାଣି ପରା, ବୁଲିଯିବ ।

ଚନ୍ଦ୍ରମଣି : ତମେ ଆସିଲାଦିନୁ ଦେଖୁଚ ତ ଆଉ କୁଆଡ଼େ ମୁଁ ବୁଲିଯାଉ ନାହିଁ । ତମେ ଚାଲ, କଣ କହୁ ପୁରାଣ ପଢ଼ିବ ମୁଁ ଶୁଣିବି ।

ସୁଲୋଚନା : ଥାଉ, ମୁଁ ଯାଉଚ ଗୋଡ଼ ହାତ ଧୋଇ ସଞ୍ଜ ବାଳିବି, ପାରୁଚ ଯଦି ତମେ ଏଠି ବସି ଠାକୁରଙ୍କ ନାମ ଭଜନ କର ।

ଚନ୍ଦ୍ରମଣି : କ'ଣ କି ଭଜନ କୁହ ?

ସୁଲୋଚନା : (ଓଠରେ ହସି) ସେକଥା ବି.ମୁଁ କହିବ ?

ଚନ୍ଦ୍ରମଣି : ଏତିକି ଜାଣିରଖ, ତମଛଡ଼ା ମୋର ଅନ୍ୟ'ଗତି କିଛି ନାହିଁ । କୁହ ।

ସୁଲୋଚନା : ହଉ, ଜାଣି ଧନ୍ୟ ହେଲି । ତମେ ଏଇ ନାମ ଭଜନ କର—

ଭଜମନ କଳା କହ୍ନାଇ
ଭଜିଲେ ଏ ଦୁଃଖ ରହିବ ନାହିଁ

[ ସା'ନ୍ତାଣୀ ଚାଲିଗଲେ, ବାବୁ ବସି ନାମ ଭଜନ କଲେ ]

[ ଉସ୍‌ମାନ୍ ବାଇ ଘର । ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଯାଇଛି । ଉପସ୍ଥିତ କଣସନ୍‌ଲାଲ୍ ଓ ଅନ୍ୟମାନେ । କିଛିଏ ପରେ ବିଷଣ୍ଣବଦନା ଉସ୍‌ମାନ୍ ଆସିଲା ]

ଉସ୍‌ମାନ୍ : କେତେବେଳେ ଫେରିଲୁ କଷନ୍ ?

କଶନ୍ : ଢେର୍ ବେଳୁ ।

ଉସ୍‌ମାନ୍ : ଦେଖାହେଲା ? କ'ଣ କହିଲେ—ଆସିବେଟି ?

ନୋକା : କହ କଷନ୍‌ଜୀ କ'ଣ ହେଲା ?

କଶନ୍ : ଦେଖଜୀ, ତମର ପାଇଁ ମୁଁ ତିନ ତିନି ବାର୍ ଯାଇ ବାବୁର ଦେଖା ପାଇନି । ଶୁଣାଯାଉଛି ତା ସା'ନ୍ତାଣୀ ଗାଁରୁ ଏଠିକି ଆସିଛି । ବାବୁ ଏବେ ତାର କାନରେ ବନ୍ଧା ।

ଉସ୍‌ମାନ୍ : ତା'ହେଲେ ?

କଶନ୍ : ଆଜ ମୁଁ ଆଉ ନୋକା ଗଲୁ । ସେ ମକଇଠା ସାଙ୍ଗରେ ଦେଖାହେଲା । ପଚାରିଲି—କହୋ ବାଭେ, ଜମିଦାର ବାବୁ ଘରେ ଅଛନ୍ତି ? ଚଟାପଟ୍ ଜବାବ୍ ମିଳିଲା—ଆମକୁ ଜଣାନାହିଁ ।

ନୋକା : ଘର ସାମ୍ନା ରାସ୍ତାରେ ବାବୁଙ୍କ ପୁଝାରୀ ଭେଟ ପଡ଼ିଲା । ପଚାରିଲି—ବାବୁ ଆପଣେ କ'ଣ ଘରେ ଥିବେ ?...ଏ'କାନ୍ଧ ଗାମୁଛା ସେ କାନ୍ଧରେ ପକାଇ ହାଇମାରି ଜବାବ୍‌ଦେଲା—ଥିଲେ ଥିବେ, ନଥିଲେ ନଥିବେ ।

କଶନ୍ : ସାହସ କରି ପାହାଚ ଉପରକୁ ଉଠିଲି । ଗୋଟାଏ ଗୁମାସ୍ତା ଢଙ୍ଗର ଲୋକ ବସିଥିଲା । ପଚାରିଲି—ମାଲିକେ, ବାବୁ କ'ଣ ଘରେ ନାହାନ୍ତି ?···ଏ ନାକପୁଡ଼ା ଗୃପି ଧରି; ସେ ନାକ-ପୁଡ଼ାରେ ନାଶ ଟାଣି ଜବାବ୍ ଦେଲା— ନଥିଲେ ନ ଥାଇ ପାରନ୍ତି ।

ଉସ୍‌ମାନ୍ : (କାନ୍ଦ କାନ୍ଦ ) ସେଉଠୁ ?

ହେନା : ହେଇଟି ଲୋ ମା', ବାବୁ ଆସିଲେଣି !

[ ଚନ୍ଦ୍ରମଣି ଆସି ପହଞ୍ଚିଲେ । ଉତ୍ତର ଅପେକ୍ଷାରେ ଉସ୍‌ମାନର ମୁହଁକୁ ଗ୍ଧହିରହିଲେ । ଉସ୍‌ମାନ୍ କାନ୍ଦ କାନ୍ଦ ଆସି ବାବୁଙ୍କ ଗୋଡ଼ରେ ଲୋଟିପଡ଼ିଲା ]

ଉସ୍‌ମାନ୍ : ସେଇ ଦୋଳଛୁଟି ପରଠୁଁ ଯାଇଚ ଯେ ଗୋଟାଏ ଯୁଗ ବିତିଗଲାଣି । (କାନ୍ଦୁଥାଏ)

ଚନ୍ଦ୍ରମଣି : ଶୁଣ, ଶୁଣ ଚା'ହେଲେ—କାନ୍ଦନାହିଁ । ତୁମେ କହୁଚ ଗୋଟାଏ ଯୁଗ, ମୁଁ କହୁଚ ତିନୋଟା—ସତ୍ୟ, ତ୍ରେତା ଓ ଦ୍ୱାପର ଏ ତିନୋଟା ଯୁଗ ବିତିଗଲାଣି—ତମ ଶ୍ରୀମୁଖ ଟିକେ ଦେଖିଲି ନାହିଁ । ତମ ଶ୍ରୀକଣ୍ଠ ମୂର୍ଚ୍ଛନା ଟିକେ ଶୁଣିଲି ନାହିଁ । ଏବେ କଳିରେ ଆସି ପହଞ୍ଚିଚ, ଏ କଳିରେ ସବୁ ନିଷ୍ପତ୍ତି ହେବ ।

ଉସ୍‌ମାନ୍ : ଶୁଣିଲି ତମ ସା'ନ୍ତାଣୀ ଆସିଚନ୍ତି, ତମର ସବୁ ବାଟ ବନ୍ଦ, ଆସିଲ କେମିତି ?

ଚନ୍ଦ୍ରମଣି : ଆଜି ସଞ୍ଜରେ ସା'ନ୍ତାଣୀଙ୍କ ହୁକୁମ୍ ହେଲା—ବସିବସି ଠାକୁରଙ୍କ ନାମ ଭଜନ କର ।

ଉସ୍‌ମାନ୍ : ତମେ ଭଜିଲ ?

ଚନ୍ଦ୍ରମଣି : ହଁ ଭଜିଲି ।

ଉସ୍‌ମାନ୍ : (ହସି ହସି) କେମିତି ଭଜନ୍ ଟିକେ ଶୁଣାଅ ତ !

ଚନ୍ଦ୍ରମଣି : ଶୁଣିବ ? ହଉ ଶୁଣ । କହନ୍ ଟିକେ ତାବଲାରେ ଠେକା ଦେଲୁ, ଆଉ ନୋକା···

ନୋକା : ହଜୁର୍ !

ଚନ୍ଦ୍ରମଣି : ଏ ହାର୍‌ମୋନିଅମ୍···(ହାତରେ ସଙ୍କେତ ଜଣାଇ) ଚାଲିବ ?

ନୋକା : (ଖୁସିରେ ମୁହଁ ତଳକୁ କରି) ଚାଲିବ ହଜୁର୍ ।

ଉସ୍‌ମାନ୍ : (ହସି) ତମେ କଣ ସତରେ ଏକାବେଳକେ···

ଚନ୍ଦ୍ରମଣି : ଜରୁର୍ ! ମୁଁ ତାଳ, ମାନ, ଲୟରେ ଗାଇବ ।

(ଗାଇଲେ)

ଗୀତ

ଚନ୍ଦ୍ରମଣି : ଭଜମନ କଳା କହ୍ନାଇ
ଭଜିଲେ ଏ ଦୁଃଖ ରହିବ ନାହିଁ ।
ଭଜମନ ଭଜମନ ଭଜମନ ଭଜମନ
ଭଜମନ କଳା କହ୍ନାଇ
ଭଜିଲେ ତୋ' ଦୁଃଖ ରହିବ ନାହିଁ
ଆ-ଆ-ଆ-ଆ ଆ-ଆ-ଆ-ଆ
ଭଜମନ କଳା କହ୍ନାଇ
ଭଜମନ ଉସ୍‌ମାନ ବାଈ ।

[ ବାବୁ ଏକାବେଳକେ ଭୋଳ ହୋଇ ଏଇ ପଦଟା ଗାଇ ଚାଲିଥା'ନ୍ତି ]

ଉସ୍‌ମାନ୍ : ହେ-ହେ-ହେ (କହନ୍ ନୋକା ମୁହଁରେ ଲୁଗା ଦେଇ ହସୁଥା'ନ୍ତି)

ଉସ୍‌ମାନ୍ : ତମେ ଏ'କ ଗୀତ ଗାଇଲ ବାବୁ ?

ଚନ୍ଦ୍ରମଣି : କ'ଣ କ ଗୀତ ?

ଉସ୍‌ମାନ୍ : ଭଜମନ କଳା କହ୍ନାଇ ଜାଗାରେ ଗାଇଲ ଭଜମନ ଉସ୍‌ମାନ୍ ବାଈ !

ଚନ୍ଦ୍ରମଣି : ସେଇ ତ !

ଉସ୍‌ମାନ୍ : କ'ଣ ସେଇ ତ ?

ଚନ୍ଦ୍ରମଣି : (ଖୁବ୍ ଉଚ୍ଛ୍ୱାସରେ) ମନପ୍ରାଣ ଢାଳି ସା'ନ୍ତାଣୀଙ୍କ କଥା ରଖି ଭଜମନ କଳା କହ୍ନାଇ ଗାଇଲି । ଗାଉଥାଏ —ସା'ନ୍ତାଣୀ ଶୁଣିପାରିବେ ବୋଲି ମଝିରେ ମଝିରେ ଗଳାଝାଡ଼ ଗାଉଥାଏ । ପୁଣି ସ୍ୱର କମେଇଦେଇ ଗାଉଥାଏ । ଏତିକିବେଳେ କଳା କହ୍ନାଇ ଜାଗାରେ ହଠାତ୍ ଡମ ନାଁ ମୋ ପାଟିକି ଚାଲିଆସିଲା —ଉସ୍‌ମାନ୍ ବାଈ—ଭଜମନ ଉସ୍‌ମାନ୍ ବାଈ ।

ଉସ୍‌ମାନ୍ : କେହି ଶୁଣିନାହାଁନ୍ତି ?

ଚନ୍ଦ୍ରମଣି : ନା, ମୋ ମନରେ ହଠାତ୍ ଚୈତନ୍ୟ ଉଦୟ ହେଲା । ଭଜମନ ଉସ୍‌ମାନ୍ ବାଈ ଗାଇଦେଲା ପରେ ମୋର ମନେ-ହେଲା ମୋର ଏ ଦେହଟା ଗୋଟାଏ ଦେହ ନୁହେଁ; ଖଣ୍ଡେ ମେଘ, ଆଉ ଉସ୍‌ମାନ୍ ଗୋଟାଏ ନାଁ ନୁହେଁ; ମେଘ ଦେହରେ ଲତା ବଜୁଳି !

ଉସ୍‌ମାନ୍ : ଏସବୁ କ'ଣ କହୁଚ ବାବୁ !

ଚନ୍ଦ୍ରମଣି : ଠିକ କହୁଚ ତାବା । ଭଜମନ ଉସ୍‌ମାନ୍ ତାବା ଗାଇଲାବେଳେ ତମେ ବଜୁଳିପରି ଝଟକି ଆସି ମୋ ଛାତିରେ ଲାଗି ରହିଚ । ଆଉ ଆମ ଭିତରେ ଛାଡ଼-ବାଡ଼ ଯୋଗ ନାହିଁ ।

ଉସ୍‌ମାନ୍ : (କୁଣ୍ଡିଏ କରି କରି ଚନ୍ଦ୍ରମଣିଙ୍କୁ ପାଖେଇ ନେଇ ତାଙ୍କ ଆସନରେ ବସାଇ ତାଙ୍କର ମୁହଁକୁ ଦୁଇ ପାପୁଲିରେ ତୋଳି ଧରିଲା ) ନାହିଁ ଜମିଦାର ସାହେବ, ତୁମେ ମେଘ ନୁହଁ କି ମୁଁ

ବଜ୍ଜୁଳି ନୁହେଁ । ତୁମେ ଚନ୍ଦ୍ର, ଆଉ ମୁଁ ସେଇ ଚନ୍ଦ୍ର ପାଖେ ପାଖେ ଗୋଟିଏ ତାରା— ଉସ୍‌ମାନ୍ ତାରା ।

[ ଇତମଧ୍ୟରେ ହେବନା ପାନାସ୍ତ ସରଞ୍ଜାମ ଆଣି ରଖିଲଣି ]

ଚନ୍ଦ୍ରମଣି : ହୁଁ । ଏବେ କୁହ କୋଉ କଥା କୋଉଠାଏ ଗଲା ?

(ଉସ୍‌ମାନ୍ କଷନ୍ ଆଡ଼େ ଗ୍ଡହିଲ)

କଷନ୍ : ଗୋପୀବଲ୍ଲଭ ।

ଚନ୍ଦ୍ରମଣି : ଆରେ ହଁ, ମୁଁ ତ ସେଇ ଗୋପୀବଲ୍ଲଭ କଥା ଭାବୁଚି ।

ଉସ୍‌ମାନ୍ : ବାବୁ, ଆଜ ଗୋପୀବଲ୍ଲଭ ଖବର ପଠେଇଚି ।

ଚନ୍ଦ୍ରମଣି : କ'ଣ ସେଇ ଜୋଚ୍ଚାମାଳ ?

ଉସ୍‌ମାନ୍ : ବାବୁଙ୍କୁ ସବୁ କଥା କହ କଷନ୍ ।

କଷନ୍ : ଗୋପୀବଲ୍ଲଭ କହେ କ ଆମର ଏଇ ଘରେ ମେହିଫିଲ୍ ବସିବ । ଯଦି ଉସ୍‌ମାନ୍‌ର ହିମ୍ମତ୍ ଅଛି ତେବେ ସେ ଆଉ ଯୁଥିକାରାଣୀ ବାଜରେ ଗୀତ ଗା'ନ୍ତୁ । ଯିଏ ଜିତିବ, ସେ ହବ ଏଇ ବସ୍ତିର ରାଣୀ ।

ଚନ୍ଦ୍ରମଣି : ଏ ଯୁଥିକାରାଣୀ କିଏ ?

ଉସ୍‌ମାନ୍ : ସିଏ ଏବେ ଗୋପୀବଲ୍ଲଭର ହୃଦୟରାଣୀ । ସିଏ ମୁର୍ଶିଦାବାଦ୍‌ରୁ ଆସିଚି ।

ଚନ୍ଦ୍ରମଣି : (ହସି) ମୁର୍ଶିଦାବାଦ୍‌ରୁ ଆମ୍‌ଦାନି ବୋଲି ଗୋପୀବଲ୍ଲଭ ନିଜକୁ ନବାବ ବୋଲେଇଚି ! ତା' ହେଲେ···ତାରା !

ଉସ୍‌ମାନ୍ : ବାବୁ, ତେମେ ଯଦି ମୋ ପାଖରେ ଠିଆହେବ, ତେବେ ମୁଁ ସେଇ ପୋଡ଼ାମୁହାଁ ଯୁଥିକାକୁ ଖାଇ ହଜମ କରିଦେବ ।

ଚନ୍ଦ୍ରମଣି : (ହ୍ୱାଇଟ ଗ୍ଲାସ୍ ଶେଷ କରି) ସାବାସ୍ ! ଖାଲି ଏ ବସ୍ତି ନୁହେଁ ଉସ୍‌ମାନ୍‌ଭାଇ, ମୁଁ ତମକୁ ଏ ସାରା କଟକ ସହରର ରାଣୀ ବନେଇବି । (ଏଥିରେ ଏମାନେ ସମସ୍ତଙ୍କ ମୁହଁରେ ହସ ହସ ଭାବ)

ଚନ୍ଦ୍ରମଣି : କଶନ୍ ଲାଲ୍ !

କଶନ୍ : ହଜୁର୍ ।

ଚନ୍ଦ୍ରମଣି : ମୋ ଜୋତା ?

କଶନ୍ : ଏଇଠି ଅଛି ହଜୁର୍ ।

ଚନ୍ଦ୍ରମଣି : ଫଟେ ଉଠାଅ !...ଉଠାଅ !

କଶନ୍ : (ଉଠାଇ) ଉଠେଇଲି ହଜୁର୍ !

ଚନ୍ଦ୍ରମଣି : ଗୋପୀବଲ୍ଲଭ ଏବେ ଯୂଥିକାରାଣୀ ମଇଫିଲ୍‌ରେ ଥିବ ତ ?

କଶନ୍ : ଜରୁର୍ ଥିବ ହଜୁର୍ ।

ଚନ୍ଦ୍ରମଣି : ଏ ଜୋତା ଯୋଡ଼ିକ ନେଇ ଗୋପୀବଲ୍ଲଭ ପାଖକୁ ଯାଅ...

ଉସ୍‌ମାନ୍ : (ଟିକେ ଡରିଯାଇ) ବାବୁସାହେବ !

ଚନ୍ଦ୍ରମଣି : ତମେ ଚୁପ୍ ରହ !...କଶନ୍ !

କଶନ୍ : ହଜୁର୍ ।

ଚନ୍ଦ୍ରମଣି : ଗୋପୀବଲ୍ଲଭକୁ ଯାଇ କହ ସେ ଗୀତ ଲଢ଼େଇ ପାଇଁ ଉସ୍‌ମାନ୍ ତାରକୁ ଯୋଉ ଡାକରା ଦେଇଚ, ସେଥିରେ ସେ ରାଜି ହୋଇ ଏ ସନ୍ତକ ପଠେଇଚ !...କି ସନ୍ତକ କଶନ୍‌ଲାଲ୍ ?

କଶନ୍ : ଏ ଜୋତା ସନ୍ତକ !

ଚନ୍ଦ୍ରମଣି : ହଁ, ଜମିଦାର୍ ବାବୁ ଚନ୍ଦ୍ରମଣି ପଟ୍ଟନାୟକଙ୍କ ବାଁ ପାଦର ଜୋତା । ମଇଫିଲ୍ କାଲି ବସିବ ।

ଉସ୍‌ମାନ୍ : କାଲି ?

ଚନ୍ଦ୍ରମଣି : ହଁ କାଲି । ଏଇଠି, ଏଇ ଘରେ କାଲି ସଞ୍ଜରେ ଯୂଥିକା ସଙ୍ଗରେ ତମର ଗୀତ ଲଢ଼େଇ ଚାଲିବ । ତମେ ଏ କାଜରେ ନ ଜିତିବାଯାଏ ମୁଁ ଘରକୁ ଫେରୁନାହିଁ ।···ଯା' କଣନ୍ ଲଲ୍ ।

କଣନ୍ : ହଜୁର୍ ।

[ଉସ୍‌ମାନ୍ ବାଈର ସେଇ କକ୍ଷ । ସମୟ ସନ୍ଧ୍ୟା । ଗୋଟିଏ ପଟରେ ଯୂଥିକା ଅନ୍ୟ ପଟରେ ଉସ୍‌ମାନ୍ ବାଈ ଗୀତ ଲଢ଼େଇ ପାଇଁ ଉପସ୍ଥିତ । ବାଦକ ଓ କିଛି ଆଗନ୍ତୁକ-ମାନଙ୍କ ସହ ଗୋପୀବଲ୍ଲଭ ଉପସ୍ଥିତ ଅଛନ୍ତି । ଗୋପୀବଲ୍ଲଭ ମନଖୁସିରେ ବୁଲାଚଲା କରୁଚନ୍ତି । ଏତିକବେଳେ ଖୁବ୍ ଦମ୍ଭ ଓ ଦର୍ପର ସହିତ ପ୍ରବେଶ କଲେ ବାବୁ ଚନ୍ଦ୍ରମଣି । ସଙ୍ଗରେ ଗୁଞ୍ଜରଣ ଖେଳଗଲା । ଗୋପୀବଲ୍ଲଭ ଏକ ପ୍ରକାର ନଇଁପଡ଼ି ଚନ୍ଦ୍ରମଣି ବାବୁଙ୍କ ପାଦକୁ ଲୁହିଁଦେଲେ ]

ଚନ୍ଦ୍ରମଣି : ଏ କ'ଣ ଗୋପୀବଲ୍ଲଭ ?

ଗୋପୀ : ଟିକେ କୁଅଁଟା ଟେକଧରନ୍ତି ବାବୁ ଚନ୍ଦ୍ରମଣି ! (ବାବୁ କୁଅଁଟା ଟେକ ଧରଲେ । ଦେଖାଗଲା ତାଙ୍କ ପାଦରେ ହଳେ ଦାମିକା ଜୋତା)

ଗୋପୀ : ହୁଁ !

ଚନ୍ଦ୍ରମଣି : ତୁମେ ତେବେ ଭାବିଥିଲ ଗୋପୀବଲ୍ଲଭ, ଯେହେତୁ କାଲି ତୁମ ପାଖକୁ ମୁଁ ମୋ' ବାଁ ପାଦର ଜୋତା ଯୋଡ଼କ ସନ୍ଧକ ପଠାଇଥିଲି, ଆଜ ଏ ମଇଫିଲ୍‌କୁ ମୁଁ କେବଳ ମୋ' ଡାହାଣ ପାଦରେ ଜୋତା ପିନ୍ଧି ଅସିଥା'ନ୍ତି !

ଗୋପୀ : ନାଇଁ ମୁଁ ଦେଖୁଥିଲି ପଟେ ଜୋତା ତ କାଲିଠୁ ଅସି ଆମ ପାଖରେ ରହିଚ, ଆର ଜୋତାପଟକ ଆଜ ତାକୁ ଖୋଜିବାକୁ ଆସିଚ କ ନାହିଁ ! ସେ ପଟକ ଏବେ ଗଲ କୁଆଡ଼େ ? (ମିଛିତ ହସ)

ଚନ୍ଦ୍ରମଣି : କଣନ୍‌ଲାଲ୍ !

କଣନ୍ : ହଜୁର୍ ।

ଚନ୍ଦ୍ରମଣି : କହାଅ, ଆର ଜୋତାପଟକ ଗଲ କୁଆଡ଼େ ?

କଣନ୍ : ଗଳମୁଣ୍ଡର ଗୋଟାଏ ଯେଉଁ କୁଣ୍ଡି ବେକରେ ଝୁଲୁଚ । (ଖୁବ୍ ହସ)

ଗୋପୀ : ଆଚ୍ଛା··· ଅଚ୍ଛା·· ଅଚ୍ଛା··· ବାବୁ ଚନ୍ଦ୍ରମଣି କାଲି ଯୋଉ ଜୋତା ହଳକ ତାଙ୍କ ପାଦରେ ପିନ୍ଧିଥିଲେ ସେଥିରୁ ପଟେ ଜୋତା ତ କୁଣ୍ଡି ବେକରେ ଝୁଲୁଚ । ଆର ପଟଟା କାହିଁ ?

ସ୍ୱର : କାହିଁ-କାହିଁ—କୋଉଠି ?

ଗୋପୀ : କାଲୁରାମ୍ ! (କାଲୁରାମ୍ ଗୋଟିଏ ଗ୍ଲେଟ ମେଜ ଉପରୁ ଡାକୁଣୀ କାଢ଼ି ଗୋଟିଏ ଫିତା ଟେକି ଧରିଲା । ଫିତାରେ ଗୁନ୍ଥା ହୋଇ ଜୋତା ପଟକ ଝୁଲୁଚ )

ସ୍ୱର : ବାଃ-ବାଃ-ବାଃ

ଗୋପୀ : ଏ ଜୋତାପଟକ ଆଜ ଏ ମଇଫିଲ୍‌ରେ ଗୋଟାଏ କୁଣ୍ଡି ବେକରେ ଝୁଲିବ !

ସ୍ୱର : ଏଁ ଏଁ ! ମଇଫିଲ୍‌ର କୁଣ୍ଡି ?

ଚନ୍ଦ୍ରମଣି : ଅଚ୍ଛି-ଅଚ୍ଛି—ମଇଫିଲ୍‌ରେ କୁଣ୍ଡି ଅଚ୍ଛି । ଆଜ ଏ ଗୀତ ଲଢ଼େଇ ଉସ୍‌ମାନ୍ ତାବ ଆଉ ଯୂଥିକାବଣୀ ଭିତରେ

ନୁହେଁ । ଏ ଲଢ଼େଇ ମୁଁ ଆଜ୍ଞ ଗୋପୀବଲ୍ଲଭ, ଆମ ଦୁହିଁଙ୍କ ଭିତରେ । କ'ଣ ଗୋପୀବାବୁ ସତ୍ୟ ?

ଗୋପୀ : ସତ୍ୟ ।

ଚନ୍ଦ୍ରମଣି : ଏ ଲଢ଼େଇରେ ଯିଏ ହାରିବ, ସିଏ ହବ···କୁଡ ଗୋପୀବାବୁ, ସିଏ ହବ···

ଗୋପୀ : କୁତ୍ତା ।

ଚନ୍ଦ୍ରମଣି : ହଁ, ସିଏ ହବ କୁତ୍ତା—ତା ବେକରେ ଏ ଜୋତା ଝୁଲିବ ।

ଗୋପୀ : ଆଜ୍ଞ ଯିଏ ଜିତିବ, ସିଏ ହବ—କୁଡ ଚନ୍ଦ୍ରମଣି ବାବୁ ? ସିଏ ହବ···

ଚନ୍ଦ୍ରମଣି : ସିଏ ହବ ଶେର୍‌କା ବଚ୍ଚା ।

ଗୋପୀ : ହଁ ସିଏ ହବ ଶେର୍‌କା ବଚ୍ଚା—ସିଂହ ଛୁଆ ।

ଚନ୍ଦ୍ରମଣି : ଆଜ୍ଞ ତା ବେକରେ ଝୁଲିବ (ଡାକଲେ) କିଷନ୍‌ଲାଲ !

[କିଷନ୍‌ଲାଲ୍ ଗୋଟିଏ ପୁଡ଼ିଆ ଖୋଲି ଦେଖାଇଲା—ଏକ ଚମତ୍କାର ଫୁଲ ହାର ]

ଚନ୍ଦ୍ରମଣି : ତା ବେକରେ ଝୁଲିବ ଏଇ ଗଜରାମାଳ···! ରାଜି ଗୋପୀବଲ୍ଲଭ ?

ଗୋପୀ : ରାଜି ।

ଚନ୍ଦ୍ରମଣି : ଓସ୍ତାଦ୍‌ଜୀ, ସୁରୁ କର । (ଗୀତ ଆରମ୍ଭ ହେଲା ଓ ଶେଷ ହେଲା । ଉସ୍‌ମାନ୍ ହିଁ ଜିତିଲା । ଚନ୍ଦ୍ରମଣିବାବୁ ଅତି ଆନନ୍ଦରେ ଉସ୍‌ମାନର ହାତ ଧରି ନାଚଲେ । ଗୋପୀବଲ୍ଲଭଙ୍କ ବେକରେ ଜୋତାମାଳ ପିନ୍ଧାଇ ଦିଆଗଲା । ଉସ୍‌ମାନ୍ ବାବୁଙ୍କ ଗଳାରେ ଗଜରାମାଳ ପିନ୍ଧାଇଲେ )

[ପରଦିନ ସକାଳ—ବାବୁଙ୍କର ସେଇ ଘର । ବାବୁ ଏବେଯାଏଁ ଘରକୁ ଫେରିନାହାନ୍ତି, ହଠାତ ଏଇ ଆଣଙ୍କାରେ ସା'ନ୍ତାଣୀ କବାଟ ଖୋଲିଲାବେଳକୁ ଗହିର ଗଜସ୍ରମାଳ ବେକରେ ପକାଇ ଖୁବ୍ ଧମ୍ଦ ଓ ଆଡ଼୍‌ବାଡ଼୍‌ରେ ଚନ୍ଦ୍ରମଣିବାବୁ ଘର ଭିତରକୁ ପଶିଆସିଲେ । ମଦ ନିଶାର ରେଶ୍ ଏପର୍ଯ୍ୟନ୍ତ ଯାଇନି, କନ୍ତୁ ଓଠଙ୍କରେ ହସ ଲଟିରହିଛି ]

ଚନ୍ଦ୍ରମଣି : ଦେଖ୍‌···ଦେଖ୍‌···ଦେଖ୍‌···ଦେଖ, ଦେଖ ସୁଲୋଚନା ସା'ନ୍ତାଣୀ—ଏ ଫୁଲମାଳ ଦେଖ । ଏଇଟା ହେଉଛି ଜୟମାଳା—ବିଜୟମାଳା । ବାଜିମାରି ଲଢ଼େଇରେ ଜିତି ଏ ବିଜୟ ମାଳା ମୁଁ ପିନ୍ଧିଛି ।

[ବାବୁଙ୍କ କଥାକୁ ଭ୍ରୂକ୍ଷେପ ନ କରି ସା'ନ୍ତାଣୀ ସେଘରୁ ବାହାରିଗଲେ । ବାବୁ ତାଙ୍କୁ ଅନୁସରଣ କରି ତାଙ୍କ ପଛେ ପଛେ ଗଲେ । ବାବୁଙ୍କ ଲୁଗାପଟା ଅବସ୍ଥାରୁ ସା'ନ୍ତାଣୀ ସବୁ ବୁଝିପାରିଚନ୍ତି । ଭିତର ଅଗଣାରୁ ତାଙ୍କ ପାଟି ଶୁଭିଲା ]

ସୁଲୋଚନା : (ଭିତରୁ) ମଲ୍ଲୀମା, ମଲ୍ଲୀମା, ଗାଧୁଆଘରେ ପାଣି ଦେ । ସେ ଆସିଲେଣି । (କିଛିଏ ପରେ ସା'ନ୍ତାଣୀ ପୁଣି ଏ ଘରକୁ ଆସିଲେ । ତାଙ୍କ ପଛେ ପଛେ ବାବୁ ସେମିତି କଥା କହୁ କହୁ ଆସିଲେ )

ଚନ୍ଦ୍ରମଣି : ଦେଖ୍‌-ଦେଖ୍‌-ଦେଖ୍‌···ଜୟମାଳା ! (ଏଣିକି ସା'ନ୍ତାଣୀ ତାଙ୍କ କଥାବାର୍ତ୍ତାରେ କେବଳ ଶ୍ଳେଷ୍‌ଠୋକ୍ ନୁହଁନ୍ତି, ବେଶ୍ କଡ଼ା ଓ କଠୋର)

ସୁଲୋଚନା : ନରହରି ଗୁମାସ୍ତାଠୁ ତମେ ଟଙ୍କା ନେଇଚ ?

ଚନ୍ଦ୍ରମଣି : ଏଁ-ଏଁ-ଏଁ !

ସୁଲୋଚନା : ପଦ୍ମରଦନ ନରହର ଗାଁ'ରୁ ଟଙ୍କା ଆଣି ଘରେ ଗୋଡ଼ ନ ଦେଉଣୁ ତେମେ ଏଇ ଦାଣ୍ଡ ଦୁଆରୁ ତା'ଠୁ ଟଙ୍କାନେଇ ଗିଥାଉଛ ଯାଇଚ ଯେ ଆଜ ଆସି ମୁହଁ ଦେଖଉଚ !

ଚନ୍ଦ୍ରମଣି : (ଦବ ନଯାଇ ବରଂ ଖୁବ୍ ଚଢ଼ା ଗଳାରେ) କ'ଣ ତମେ ଏମିତ ମତେ କଡ଼ା କଡ଼ା କଥା କହୁଯାଉଚ !

ସୁଲୋଚନା : ଆଗରେ ଲଟବନ୍ଦୀ । ପେସ୍‌କସ୍ ଦାଖଲ ପାଇଁ ଟଙ୍କା ଆସିଥିଲା, ଏକଥା ଗୁମାସ୍ତା ତମକୁ କହୁଚ ।

ଚନ୍ଦ୍ରମଣି : (ଢୋକଗିଳି) ହଁ ହଁ, ଗୁମାସ୍ତା କହୁଚ—ମୁଁ ଟଙ୍କା ନେଇଚ—ହେଲା ?

ସୁଲୋଚନା : ଶୁଣ, ଏବେଠୁ ତେମେ ଆଉ ଗୁମାସ୍ତା ମୋହରର ପିଆଦା କାହାରକୁ ଟଙ୍କା ମାଗିବ ନାହିଁ—ମାଗିଲେ ସେମାନେ ତମକୁ ଦେବେ ନାହିଁ । ମୋ ହୁକୁମ୍ ।

[ବାବୁ ଜାଣିପାରଲେ ସା'ନ୍ତାଣୀ କେବଳ ଉପର ମୁହଁରେ ନୁହେଁ, ତାଙ୍କ ଅନ୍ତର ଭିତରୁ ଏ କଥା କହୁଚନ୍ତି । ଏଥିପାଇଁ ସେ ପ୍ରସ୍ତୁତ ହୋଇ ରହୁଲେ ]

ଚନ୍ଦ୍ରମଣି : ହୁକୁମ୍ ! ତେମେ ହୁକୁମ୍ କରଚ ?

ସୁଲୋଚନା : ହଁ, ମୁଁ ହୁକୁମ୍ କରଚ ।

ଚନ୍ଦ୍ରମଣି : ଆରେ ସା'ନ୍ତାଣୀ, ତେମେ କଟକ ଆସିଲା ଦନଠୁ ମୁଁ ତମ ପାଖରେ ଖୁବ୍ ଗୁବଏ ଲଲେଇ ପାଲେଇ ହେଇଚ—ତମ ମନ ନେବା ପାଇଁ ତମକୁ ଖୋସାମତ୍'ବସ୍ରମତ୍ କରଛୁ··· କାହିଁକ ଜାଣ ? ଏଇଟା ଆମ ପୁରୁଷ ଜାତର ଗୋଟାଏ ଲକ୍ଷଣ—ଗୋଟାଏ ସୁଲ୍‌ବାଜ ଗୁଣ । ସ୍ତ୍ରୀ' ବୋଲି ତମେ ମୋ ଉପରେ ହୁକୁମ୍ ଜାହିର୍ କରବ !···ପୁରୁଷ ପୁଅ

ମୁଁ, ସିଂହଚୁଆ—ପୁଣି ଜମିଦାର ପିଲା । ମୋର ମନ ଅଛି—ଧନ ଅଛି—ବଳ ଅଛି—ଦୁନିଆ ଅଛି···ମନ ଯେବେ ଚାହିଁବ, ଦ'ପାଞ୍ଚ ଗଣ୍ଡ ମଉଜ ମଜଲିସ୍ କରିବ । ଏ ହାତରେ ମଦ ବୋତଲ ତ ସେ ହାତରେ ଗଞ୍ଜେଇ ଚିଲମ୍ ଧରିବ । ଏଗୁଡ଼ିକ ତ ଆମ ପୁରୁଷପୁଅର ଧର୍ମ ।

ସୁଲୋଚନା : ଭଲକଥା, ବେଶ୍‌କଥା । ତେମେ ମଦବୋତଲ ଧରିଲେ ମୁଁ ଧରିବ ଗୁଞ୍ଜୁଣୀ ମୁଠା—ଝାଡ଼ୁ । ଏଇଟା ଆମର ଝିଅଲା ଜାତିର କର୍ମ ।

ଚନ୍ଦ୍ରମଣି : (ଚହିଁକ ଉଠି) କ'ଣ-କ'ଣ ? କ'ଣ କହିଲ ? ତେମେ ଝାଡ଼ୁ ଧରିବ ! ଏତେ ଗ୍ଲେଟଲୋକ ତେମେ ? ଏଁ ! ସା'ନ୍ତାଣୀ ହେଇ ତେମେ ଝାଡ଼ୁ ଧରିବ ତ, ତମ ଘରେ ଦାସୀ ପରିବାରି କାହିଁକି ଅଛନ୍ତି ?

ସୁଲୋଚନା : ଆହା, ଜମିଦାର ସା'ନ୍ତଙ୍କ ପିଠିରୁ ମଳ ଝାଡ଼ିବାକୁ ଯୋଉ ଝାଡ଼ୁ ଦରକାର ସେ ଝାଡ଼ୁକୁ ତ ଦାସୀ ପରିବାରି ଧରିବେନି, ଧରିବେ ଖୋଦ୍ ସା'ନ୍ତାଣୀ ।

ଚନ୍ଦ୍ରମଣି : ହୁଁ ! ତମ ମୁହଁଟା ତ ଭାରି ବଢ଼ିଗଲାଣି ଦେଖୁଚି । ଖୁବ୍— ଲମ୍ବା ଲମ୍ବା କଥା କହୁଚ ।

ସୁଲୋଚନା : ମୁହଁଟା ତ ଥିଲା—ମୁହଁରେ କଥା ବି ଥିଲା । ହେଲେ ଏଣିକି କଥା ଲମ୍ବିବ । ଏତେ ଏତେ ଲମ୍ବିବ ଯେ ତମ ଚଉକାଠ ପାଇବନି ।

ଚନ୍ଦ୍ରମଣି : ବେଶ୍ । ତେବେ ମୋ ଲମ୍ବା କଥା ଶୁଣ···ଗୁଜରିଟା ଯାଇଚି ଗୋଟାଏ ତେଣ୍ଟା ଯାଇଚି । ବାପା ଯାଇ କାଶୀ- ଧାମରେ ରହିଲେଣି, ସେ ତେଣ୍ଟା ଆଉ ନାହିଁ । ଏଣିକି ଏଇଠି, ଏଇଘରେ—ମୋ ଘରେ ସବୁ ଚାଲିବ । ଆସର

ବସିବ— ମଇଫିଲ୍ ଜମିବ—ବାଈନାଚ ହବ—ତେବେ ଯାଇ ତମ ମୁହଁ ଘଞ୍ଜିବ, ବୁଝିଲ ? ଗାନା ବାଜନା ଖାନା ପି'ନା—ସବୁର ଧୂମ୍ ଛୁଟିବ ଏଇଠି—ମୋ ଘରେ ।

ସୁଲୋଚନା : ବେଶ୍ ବେଶ୍, ଭଲକଥା । ତମ ଘରେ ତମେ ଯାହା କରୁଚ କର—ଯାହାକୁ ଆଣି ନସ୍କଉଚ ନସ୍ତ । ହେଲେ ଏ ଘରେ—ଏଇ, ଏ କୋଠାରେ ନୁହେଁ ।

ଚନ୍ଦ୍ରମଣି : କାହିଁକି ଏଇଟା କ'ଣ ମୋ ଘର ନୁହଁ ?

ସୁଲୋଚନା : ନା । (ଜମିଦାର ଦେଇଥିବା ଦଲିଲଟା ପଣତ ତଳୁ ବାହାର କରି ବାବୁଙ୍କୁ ଧରାଇଦେଲେ)

ଚନ୍ଦ୍ରମଣି : ଏଇଟା କ'ଣ ?

ସୁଲୋଚନା : ପଢ଼, ବୁଝ, ଦେଖ ଏଇଟା କ'ଣ ।

[ ଦଲିଲ୍ ଟା ପଢୁ ପଢୁ ବାବୁଙ୍କ ମୁହଁ କଳାପଡ଼ିଗଲା—ସବୁ ତେଜ ଉଭେଇଗଲା—ନିଶା ଛୁଟିଗଲା, ନଥି କରି ଖଟ ଉପରେ ବସିପଡ଼ିଲେ । ଅବସ୍ଥା କାନ୍ଦ କାନ୍ଦ ]

ଚନ୍ଦ୍ରମଣି : ଜମିଜମା ଜମିଦାରୀ କୋଠାବାଡ଼ ସବୁ ବାପା ତମ ନାଁରେ କବଲା କରିଦେଇଚନ୍ତି—ଏକାବେଳେକେ ଉସ୍ତ କବଲା—ବକ୍ଷୀ କବଲା !

ସାʼନ୍ତାଣୀ : ପଢ଼ିଲ ତ ?

ଚନ୍ଦ୍ରମଣି : ମତେ ପୁଣି ଲୁଚେଇ ବାପା ଏ କାମ କରିଚନ୍ତି ।

ସୁଲୋଚନା : ବୁଝିଲ ତ ?

ଚନ୍ଦ୍ରମଣି : ମୁଁ ଯେ ଢେର୍ ଗୁଡ଼ାଏ ଟଙ୍କା ହେଣ୍ଡନୋଟ୍ ରେ କରଜ୍ କରି ଚକେଇଚ । ସ୍ଵକର ନାହିଁ—ଜମିଦାରୀ ନାହିଁ—ଶୁଝିବ

କେମିତି ? ମହାଜନମାନେ ଯେ ମତେ ଦେଓ୍ୱାଲୀ ଫାଟକ ଦେଖେଇଦେବେ !

ସୁଲୋଚନା : ନିଜ ଘର ଫାଟକ ବନ୍ଦ କରିଦିଅ, ଦେଓ୍ୱାଲୀ ଫାଟକ ଆଉ ଦେଖିବନି ।

ଚନ୍ଦ୍ରମଣି : ମତେ ଅକଳରେ ପକେଇ ଏ କଥା କହୁଚ, ନା ?

ସୁଲୋଚନା : କଳ ଅକଳ ତେମେ ଜାଣ । ଇଏ ମୋ ଘର—ମୋ ସମ୍ପତ୍ତି—ମୋ ହୁକୁମ୍ । ଆଜଠୁ ଏ ଘରୁ ପାଦ କାଢ଼ି କୁଆଡ଼େ ତେମେ ଯିବ ନାହିଁ । ଦିନ ରାତି ଆଠ ପ୍ରହର ଏଇ ଘରେ ଏଇ ଖଟଟି ଉପରେ ପଡ଼ି ରହିବ । ମୋର କଥାରେ ବସିବ—ମୋର କଥାରେ ଉଠିବ । ବାହାର ଲୋକଙ୍କୁ ଭେଟିବ ନାହିଁ—ବାହାର କଥା ଶୁଣିବ ନାହିଁ ।···ଆଉ ଥରେ ତମକୁ ଚେତାଇ ଦଉଚି, ଇଏ ମୋ ସମ୍ପତ୍ତି—ମୋ ଘର—ମୋ ହୁକୁମ୍—ସା'ନ୍ତାଣୀଙ୍କ କଡ଼ା ହୁକୁମ୍ ।

[ ସଶବ୍ଦରେ କବାଟ ବନ୍ଦକରି ସା'ନ୍ତାଣୀ ବାହାରି ଆସିଲେ । ଅସହାୟ ଭଳି ବାବୁ ଖଟ ଉପରେ ଠିକ୍ ସେଇ ଢଙ୍ଗରେ ଲୋଟିପଡ଼ିଲେ, ଯେମିତି ଢଙ୍ଗରେ ଲୋଟିପଡ଼ିଥିଲେ "ସ୍ୱୟମ୍ବର" ଆରମ୍ଭ ଦୃଶ୍ୟରେ ··କିଛି ମୁହୂର୍ତ୍ତ ଅତିବାହିତ ହେଇଗଲା, ବାବୁ ସେମିତି ମୁଣ୍ଡତଳେ ହାତରଖି ଶୋଇଥା'ନ୍ତି । ସା'ନ୍ତାଣୀ ପୂର୍ବର ସେଇ ଝରକା ପାଖକୁ ଆସିଲେ ]

ସୁଲୋଚନା : (ଝରକା ସେପାଖରୁ) ଶୁଣୁଥିଲ ?

ଚନ୍ଦ୍ରମଣି : (ଈଷତ୍ ଚମକି) ଏଁ ! ହଁ, ଶୁଣୁଥିଲି ।

ସୁଲୋଚନା : (ହସ ହସ ମୁହଁରେ ଭିତରକୁ ଆସି) କୋଉଠୁ କୋଉଯାଏ ଶୁଣିଲ ?

ଚନ୍ଦ୍ରମଣି : ପାଞ୍ଚସରିଆ ସୋରିଷିଆ ମାଳଠୁ ଗଜରା ଜମ୍ବୁମାଳା ଯାଏ ।

ସୁଲୋଚନା : (ସନ୍ଦେହ ଦୃଷ୍ଟିରେ ବୃଦ୍ଧ) ସ୍ମୋକ କରୁଚ ?

ଚନ୍ଦ୍ରମଣି : ନା ।

ସୁଲୋଚନା : ଶୋଷ ?

ଚନ୍ଦ୍ରମଣି : ନା ।

ସୁଲୋଚନା : ଆଉ···?

ଚନ୍ଦ୍ରମଣି : ମୁଣ୍ଡ ବଥଉଚି ।

ସୁଲୋଚନା : ଟିକେ ପାଚନ କରିଆଣେ ··

ଚନ୍ଦ୍ରମଣି : ନା-ନା ।

ସୁଲୋଚନା : ମୁଣ୍ଡ ଚିପିଦେବି ?

ଚନ୍ଦ୍ରମଣି : (ଅଢ଼ ବଙ୍କଲରେ) ସେଇ ଭଲ ହ'ବ । (ମୃଦୁହସି ସୁଲୋଚନା ମୁଣ୍ଡ ଚିପିବା ଆରମ୍ଭ କଲେ)

[କିଛି ସମୟ ପାଇଁ ମଞ୍ଚ ଅନ୍ଧକାର]



# ଦ୍ୱିତୀୟାଙ୍କ

[ମଞ୍ଚ ଆଲୋକିତ ହେଲା । ଚନ୍ଦ୍ରମଣି ବାବୁଙ୍କ ସେଇ ଘର । ପୂର୍ବବର୍ତ୍ତୀ ମୁଣ୍ଡଚିପା ଦୃଶ୍ୟ ଚାଲିଛି । ଟିକିଏ ପରେ ମୁଣ୍ଡ ଚିପା ଶେଷ କରି ସା'ନ୍ତାଣୀ ଉଠିଲେ । ବାବୁଙ୍କର ଏକାବେଳକେ କୃତକୃତ୍ୟ ଭାବ ]

ଚନ୍ଦ୍ରମଣି— ବାଃ…ବାଃ…ବାଃ !…ବାଃ-ବାଃ-ବାଃ…

ସୁଲୋଚନା : (କୃତ୍ରିମ ଶାସନ ଭଙ୍ଗୀରେ) କ'ଣ ବାଃ—ବାଃ…ହଁ ? ବାଃ-ବାଃ— କ'ଣ ? (ବାବୁଟିକେ ଦବଗଲେ)

ଚନ୍ଦ୍ରମଣି : ନାହିଁ…ଏଇ ଯୋଉ ମୁଣ୍ଡ ଚିପା…

ସୁଲୋଚନା : ବାଃ-ବାଃ କ'ଣ ?

ଚନ୍ଦ୍ରମଣି : (ସା'ନ୍ତାଣୀଙ୍କ ହାତ ଧରି) ତମ ଏ ହାତ କେଡ଼େ ନରମ୍, କେଡ଼େ ମୁଲାୟମ୍ ! ହେଲେ ଢ' ହାତରେ ମୁଣ୍ଡ ଚିପି ଧରିଲାବେଳେ କେଡ଼େ ଜବ୍ବର, ସେଇଠୁ ପୁଣି କି ଆରାମ୍ !

ସୁଲୋଚନା : ସେଇଠୁ ?

ଚନ୍ଦ୍ରମଣି : ତମର ଏ ଆଙ୍ଗୁଠି ଟିପସବୁ କି କୋମଳ ! ମାତ୍ର ମୋ ଅଧାକପାଳ ଉପରେ ବୁଲିଲାବେଳେ କି ଖରଖର… ଆଉ…

ସୁଲୋଚନା : ଆଉ ?

ଚନ୍ଦ୍ରମଣି : ଆଉ (ହସ ହସ ମୁହଁରେ) କି ମିଠା !

ସୁଲୋଚନା : (ବ୍ରେକ୍‌ଫାଷ୍ଟ ଖବେ) ଥାଉ । ତମର ଏ ପାକଳା ଚାକର ଚକ୍‌କଣିଆ କଥାଗୁଡ଼ାକ ମତେ ଆଉ ଶୁଣାଅ ନାହିଁ । ପାଟି ବନ୍ଦ କରି ଶୁଅ (ସାଂ'ନ୍ତାଣୀ ଉଠିଗଲେ, ବାବୁ ଦବିଗଲେଣି । ତଥାପି ସାହସ ନ ଛାଡ଼ି କଥା ନକହି ଖାଲି ଗୁଁ-ଗୁଁ ହେଲେ । ସାଂ'ନ୍ତାଣୀ ଅଟକିଲେ)

ସୁଲୋଚନା : ଗୁଁ ଗୁଁ ହଉଚ କାହିଁକି ?...କ'ଣ କହିବ ?

ଚନ୍ଦ୍ରମଣି : ହଁ ଅ...(ସାଂ'ନ୍ତାଣୀ ବାବୁଙ୍କ ପାଖକୁ ପୁଣି ଝପଟି ଆସିଲେ । ବାବୁ ବଳକରେ ତାଙ୍କୁ ଗ୍ଧିଲେ)

ସୁଲୋଚନା : କୁହ କ'ଣ କହିବ ।

ଚନ୍ଦ୍ରମଣି : ହଁ ଅଢ଼େଇମାସ ହେଇଗଲା ଏଇ ଘରଟା ଭିତରେ ବାନ୍ଧ-ହେଇ ପଡ଼ିଚି । ଟିକଏ ଆଲୁଅପବନ ପାଇଲି ନାହିଁ ।

ସୁଲୋଚନା : ହଁ ଅଢ଼େଇ ହଜାରଥର ତ ଏଇ କଥା କେଇପଦ ତମ ମୁହଁରୁ ଶୁଣିଲିଣି । ତମେ ନିଜେ ସିନା ବାନ୍ଧହେଇ ପଡ଼ିଚ, ତୁମ ମନ ? ମନ ଯାଇ କୋଉ ଗଗନପବନରେ ଉଡ଼ୁଥିବ !

ଚନ୍ଦ୍ରମଣି : ନାଇଁ ନାଇଁ, ଜମା ନୁହେଁ । ଏ ଦେହ ଯୋଉଠି ମନ ସେଇଠି...ମାତ୍ର...

ସୁଲୋଚନା : ମାତ୍ର ?

ଚନ୍ଦ୍ରମଣି : ବାହାର ଆଲୁଅ ପବନ ଟିକେ ନ ବାଜିଲେ ଏ ଦେହଟା ଆଉ ଦେହ ହେଇ ରହିବନି ।

ସୁଲୋଚନା : (ଉକ୍ତିତ୍ଵରେ ବେଣ୍ ବଡ଼ ପାଟିରେ) କ'ଣ ହେଲା ? ବାହାରକୁ ଯିବ ? ପୁଣି ମସ୍ତ କରିବ—ପୁଣି ସେଇ ମଦ ଗଞ୍ଜେଇ ନିଶାପାଣି ପରଦାର ପଶା ଭଙ୍ଗ । ବୁଝିଥାଅ୍ କହିଦଉଚି — ଇଏ ମୋ ସମ୍ପତ୍ତି—ମୋ ଘର—ମୋ ହୁକୁମ୍ ମତେ

ନକଲ୍ବି ଏଠ୍ ଯାବେ କୁଆଡ଼େ ଯାଇପାରିବନ । ଭିତରକୁ ଯିବାପାଇଁ ଦରଜା ଖୋଲିଲାବେଳକୁ ଦେଖିଲେ ମକର ଓ ମଲ୍ଲୀମା' ଦୁଆର ମୁହଁରେ ଠିଆହୋଇଚନ୍ତି ।

ସୁଲୋଚନା : କ'ଣ ? · ପୂଜାଘର କାଇଁ ?

ମକର : ଗୋଷ ଘର ଧୋଉଚନ୍ତି ।···ଆଜ ତ ମା ଆପଣଙ୍କର ଉପାସ ।

ସୁଲୋଚନା : (ହସି) ମୋର ଉପାସ ବୋଲି କ'ଣ ଆଉ କେହି ଖାଇବେ ନାହିଁ ?···ଆଜ ପୁଣି ଘରେ ଆଇଁଷ ପଶିବ ନାହିଁ ।

ମଲ୍ଲୀମା : ହଁ ପର ଆଜ ବୁଧେଇ ଓଷା, ଘରକୁ ଆଇଁଷ ଆସିବନ ।

ମକର : ଏଣେ ବାବୁଙ୍କ ଠା' ବରାଦ···

ସୁଲୋଚନା : ସେଇ କଥା କହୁଚ (ଘର ଭିତରକୁ ଫେରି ଆସି ବାବୁଙ୍କୁ ଲକ୍ଷ୍ୟ କରି) ଶୁଣ, ତମ ଠା' ପାଇଁ ଏ ବେଳା ଏଇ ବରାଦ କରୁଚ—ଗୁଆଘିଅ ଓ ନଡ଼ିଆ ରସରେ ଫୁଲକୋବି କାଲିଆ, ବନ୍ଧାକୋବି ଦେଶୀଅଳୁ ଘାଣ୍ଟ, ଅଳୁ ପୋସ୍ତ ସଜନାଛୁଇଁ ତରକାରି, ଦହି ବାଇଗଣ, ଭଜା ଖେଚୁଡ଼ି— ଆଉ ଯାହା ନନ୍ଦନର ରନ୍ଧା···ସଞ୍ଜ ଜଳଖିଆକୁ ଛୁଞ୍ଚୁବଣ ଆଉ

ମକର : ମଦନ୍‌ଭୋଗ ?

ସୁଲୋଚନା : ନାଇଁ । କୋଉଦିନୁ ବାବୁ ଝର ରସଗୋଲା ଖାଇନାହାନ୍ତି । ଆଜ ଝର ରସଗୋଲା ହବ · ମଲ୍ଲୀମା' ଏବେଠୁଁ ଝର ଢ'ଟା ପାଣିରେ ପକେଇ ରଖ ।·· ଆଉ ରାତି ଠା'କୁ ମାଲପୁଆ ଆଉ ଛେନା ପାୟସ୍ । (ବାବୁଙ୍କୁ) ଶୁଭୁଚ ?

ଚନ୍ଦ୍ରମଣି : ହଁ, ଏସବୁ ବରାଦ୍ କାନରେ ପଡ଼ିଲାଣି ।

ସୁଲୋଚନା : ଚଳିବ ତ ?

ଚନ୍ଦ୍ରମଣି : ହିଁ-ଅ ଚଳବ ।

ସୁଲୋଚନା : କାଇଁକ—ଏମିତ କୁହୁଛଇ କର କହୁଚ କାହିଁକ ? ଏସବୁ ପାଟିକ ରୁଚବ ନାହିଁକ ?

ଚନ୍ଦ୍ରମଣି : (ଉଠିବସି) ନାଇଁ ନାଇଁ, ରୁଚବ । ଏତେ ସୁନ୍ଦର ସୁନ୍ଦର ଜନାଷ ତମେ ବଗଦ କରୁଚ ! ଖାଲି ଗୋଟିଏ କଥା—

ସୁଲୋଚନା : (ଟିକେ ଚେଜଉଠି) କ'ଣ, କ କଥା ?

ଚନ୍ଦ୍ରମଣି : ଏ ଭୋଜନ ସାଙ୍ଗକୁ ବାହାର ଆଲୁଅ ପବନରେ ଟିକଏ ଭ୍ରମଣ ।

ସୁଲୋଚନା : (ବ୍ରେକ୍‌ଠୋକ୍) ଆଜ ନୁହେଁ, କାଲି—କାଲି ଏକଥା ମୁଁ ବନ୍ଦୁର କରବ । ମକଗ୍, ତୁ ବଜାରକୁ ଯା' ଏ ବଗଦ ମୁତାବକ ଜନଷ ଆଣିବୁ ।

(ହଜେ ଗ୍ଭଲଗଲେ । ମଲ୍ଲୀମା' ଓ ମକଗ୍ ଘରର ଏ ପଟକୁ ଆସି କଥାବାର୍ତ୍ତା ହେଲେ)

ମଲ୍ଲୀମା : (ନମ୍ରସ୍ୱରରେ) ଦେଖିଲ୍ଟିରେ ମକଗ୍, ବାବୁଙ୍କୁ ଭଲବାଟକୁ ଆଣିବା ପାଇଁ ଆମ ସା'ନ୍ତାଣୀଙ୍କର କେତେ ଆକଟ, ଆଉ ବାବୁଙ୍କ ଖିଆପିଆ, ଦେହମୁଣ୍ଡ ବେଳକୁ ସା'ନ୍ତାଣୀ ସାକ୍ଷାତ୍ ମା' ଲକ୍ଷ୍ମୀ ।

(ଏ ଦୁହେଁ ଭତରକୁ ଗ୍ଭଲଗଲେ । ବାବୁ ଏକଥା ଶୁଣି ନଶୁଣିଲା ପର ଗୁହିଁରହୁଥା'ନ୍ତି )

[ ପୂର୍ବର ସେଇଘର । ପରଦନର ଘଟଣା । ବାବୁ ମନ ଦୁଃଖରେ ଖଟ ଉପରେ ବସିଚନ୍ତି । ପାଖରେ ହାର୍-ମୋନିୟମ୍ ]

ଚନ୍ଦ୍ରମଣି : (ମନକୁ ମନ) କ'ଣ କରିବା ! ଜଣ୍ଡପ୍ରଣ୍ଡ ଘୋଡ଼ା ଖାଦ୍ୟ ଖାଇ ଖାଇ ମତେ ଆଜ କାହିଁକି ଘର କାନ୍ଦ ମାଡ଼ୁଛି··· କାନ୍ଦିବି ? ନାଇଁରେ ବାବା ! ସେଇ ଯୋଉ ସା'ନ୍ତାଣୀ ଖଣ୍ଡିକ ଅଛି, ସେ ଠିକ୍ ଜାଣିପାରିବ ମୁଁ କାହିଁକି କାନ୍ଦୁଛି ! କେତଦିନ ଆଉ ନିସ୍ତାର ନାହିଁ···ଆଚ୍ଛା ଗଦେଅଧେ ଗୀତ ଗାଇଲେ କେମିତି ହ'ନ୍ତା ! ଦେଖେଁ ଆଗେ ଶାସ୍ତ୍ରୀୟ ଢଙ୍ଗରେ ଟିକିଏ ଆଳାପରୁ ଆସେ । (ଆରମ୍ଭ କଲେ । ଏହା ହେଉଛି ଏ ନାଟକର ପ୍ରଥମ ଗୀତର ଅବଶିଷ୍ଟାଂଶ)

ଆଳାପ

ଚନ୍ଦ୍ରମଣି : ସା ରେ ଗା ମା···ଗା ମା ଗା ମା
ଗା ଗା ମା ମା···ମା ରେ ସା ରେ
ଝରେ ଝରେ
କଣ ଝରେ ?
ଲୁହ ଝରେ—

ଗୀତ

ଝର ଝର ଝର ଝର ଝର ଝର ଝରେ ଯା
ଏ ଆଖିର ଯେତେ ଲୁହ ପାଣି ସବୁ ଝରି ଯା
କାହାପାଇଁ ଲୁହ
ସଞ୍ଚିବି ମୁଁ ଲୁହ
ମୁଁ, ବାବୁ ହୋଇ ଯେବେ କାବୁ କଲ ମୋତେ
ମୋ' ଘରେ ମୋହର ଭରସା
ଚନ୍ଦ୍ରମଣି ତୁ ମରଯା'
ମର ଏ ସଂସାରୁ ଛରଯା ।

[ ଗୀତ ଶେଷ ହେଲା । ସା'ନ୍ତାଣୀ ଆସିଲେ ]

ସୁଲୋଚନା : ଆଜ ପୁଣି ଗୀତ ଗାଉଥିଲ କି ? (ବାବୁ କଚ୍ଛ କନିଦ ଅଖିରୁ ଲୁହ ପୋଛୁଲେ) ତମେ କାନ୍ଦୁଚ ?

[ ବାବୁ ମଥା ହଲାଇ ନାସ୍ତିସୂଚକ ସୂଚନା ଦେଲେ । କିନ୍ତୁ ସା'ନ୍ତାଣୀ ସବୁ ବୁଝିପାରିଲେଣି, ବାବୁଙ୍କ ପାଖରେ ବସି ତାଙ୍କ ମଥାର କେଶ ଭିତରେ ସସ୍ନେହରେ ନିଜର ଅଙ୍ଗୁଠି ଚାଳନା କଲେ । କ୍ରମେ ବାବୁଙ୍କ ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା ]

ସୁଲୋଚନା : (ମିଠା ଗଳାରେ) ଯିବ ?

ଚନ୍ଦ୍ରମଣି : ଏଁ !

ସୁଲୋଚନା : ବାହାରକୁ ବୁଲିଯିବ ?

ଚନ୍ଦ୍ରମଣି : ବାହାରକୁ ?

ସୁଲୋଚନା : ହଁ (ସାଆନ୍ତାଣୀଙ୍କ ଏ କଥାରେ ବାବୁଙ୍କ ଭିତରର ଆନନ୍ଦଟା ଆପେ ଆପେ ବାହାରେ ଉଛୁଳି ପଡ଼ୁଛି)

ଚନ୍ଦ୍ରମଣି : ତମେ···ତମେ ଛାଡ଼ିବ ମତେ ?

ସୁଲୋଚନା : (ହସି) ମୁଁ କ'ଣ ତମକୁ ବାନ୍ଧିରଖିଚି ? ତମ ଗୁଣରୁ ତମେ ଏଠି ଅଟକିପଡ଼ିଚ ।

ଚନ୍ଦ୍ରମଣି : (ଟିକେ ଦବିଯାଇ)···ଛ' ଛ' ମାସ ହୋଇଗଲା, ଦେହରେ ଟିକେ ଆଲୁଅ ପବନ ବାଜିଲାନି । ମନ ଚାହୁଁଚି···

ସୁଲୋଚନା : (ଦୃଢ଼) ତମ ମନ ଯାହା ଚାହୁଁଚି, ସେ କଥା କ'ଣ ମୋ ମନ ନାଇଁ ଭାବୁଚ ? ଜାଣିଚି ।

ଚନ୍ଦ୍ରମଣି : (ରହି ରହି) ତା' ହେଲେ···

ସୁଲୋଚନା : ଡରିଯାଉଚ କି ? ନାଇଁ ଡରନାହିଁ । ତୁମେ— ବୁଲିବାକୁ ଯିବ ।

ଚନ୍ଦ୍ରମଣି : (ପାଟିକରି ଉଠି) ଯିବ ?

ସୁଲୋଚନା : ଏମିତି ପାଟିକରି ଉଠିଲ କାହିଁକି ?

ଚନ୍ଦ୍ରମଣି : ତମ ମୁହଁରୁ ମୁଁ ଯିବା କଥାଟା ଶୁଣି ନିଜକୁ ଆୟତ୍ତରେ ରଖିପାରିଲି ନାହିଁ । (ଏଥରେ ସା'ନ୍ତାଣୀ ହସି ପକେଇଲେ)

ସୁଲୋଚନା : ହଉ ହେଲା—ତେମେ ଏଣିକି ପଦାକୁ ବୁଲିଯିବ । ··କୁହ, କେତେବେଳେ ଯିବ ?

ଚନ୍ଦ୍ରମଣି : ତୁମେ ଯେତେବେଳେ କହିବ ମୁଁ ଯିବି ।

ସୁଲୋଚନା : ଦେଖ ବୁଲିଯିବା ଲୋକ ତୁମେ, ମୁଁ କ'ଣ କହିବି ?

ଚନ୍ଦ୍ରମଣି : ତା'ହେଲେ ସା'ନ୍ତାଣୀ ··

ସୁଲୋଚନା : କ'ଣ, କ'ଣ କହିଲ ?

ଚନ୍ଦ୍ରମଣି : (ଡରିଯାଇ) କାଇଁ, କିଛି କହିନାହିଁ ତ !

ସୁଲୋଚନା : ମୁଁ ସା'ନ୍ତାଣୀ ! ମତେ ତୁମେ ସା'ନ୍ତାଣୀ ଡାକିବ ?

ଚନ୍ଦ୍ରମଣି : ଏ ପଦଟା ମୋ ପାଟିରୁ କେମିତି ବାହାରି ପଡ଼ିଲା···

ସୁଲୋଚନା : ଭାବିଚ ମତେ ଏମିତି ଖୋସାମତିଆ କଥା କହିଲେ ମୁଁ ତରଳିଯିବି ?···ମୁଁ ଯାଉଚି ।

ଚନ୍ଦ୍ରମଣି : ନାଇଁ ନାଇଁ ସୁଲୋଚନା ଦେଈ, ସେଦିନ ରାଗରେ ସା'ନ୍ତାଣୀ କହିଦେଇଥିଲି, ଆଜି ଭୁଲରେ ପାଟିରୁ ବାହାରି ପଡ଼ିଲା । ଆଉ ଏ ଭୁଲ ହବନି ।

ସୁଲୋଚନା : (ହସିପକେଇ) ଠିକ୍ କହୁଚ ?

ଚନ୍ଦ୍ରମଣି : ଠିକ୍ ।

ସୁଲୋଚନା : ଏବେ କୁହ କେତେବେଳେ ବୁଲିଯିବ ?

ଚନ୍ଦ୍ରମଣି : ବର୍ତ୍ତମାନ—ଏଇ ସକାଳେ । ପ୍ରାତଃ ଭ୍ରମଣ ତ ସ୍ୱାସ୍ଥ୍ୟ ପକ୍ଷରେ ଭଲ ବୋଲି କୁହନ୍ତି ।

ସୁଲୋଚନା : ହଉ ହେଲା, ଏବେ ବାହାରିପଡ଼ ।···ଏଠିକି ଆସ । (ସଦର ଦରଜା ନିକଟକୁ ଗଲେ) ଏଇଟା କ'ଣ ?

ଚନ୍ଦ୍ରମଣି : ସଦର ଦରଜା ।

ସୁଲୋଚନା : ଦରଜା ସେ ପାଟକୁ ?

ଚନ୍ଦ୍ରମଣି : ପାହାଚ ।

ସୁଲୋଚନା : ପାହାଚ ତଳକୁ ?

ଚନ୍ଦ୍ରମଣି : ରାସ୍ତା ।

ସୁଲୋଚନା : ତୁମେ ଏଇ ପାହାଚରେ ଓହ୍ଲାଇ ଆମ ଏଇ ଘର ସାମ୍ନା ରାସ୍ତାରେ ବୁଲଚଲ କରିବ ।

ଚନ୍ଦ୍ରମଣି : ହଁ ଆମ ଏଇ ଘର ସାମ୍ନା ରାସ୍ତାରେ ବୁଲଚଲ କରିବ ।

ସୁଲୋଚନା : ହଁ, କେମିତି ବୁଲିବ, କେତେ ସମୟ ବୁଲିବ ଆଉ କେତେ ବାଟ ବୁଲିବ, ସେକଥା ଏଇ ଦୁଇ ତିନିଦିନ ତଳେ ମୁଁ ତମକୁ କହିଥିଲି, ମନେଅଛି ତ ?

ଚନ୍ଦ୍ରମଣି : ସବୁ, ସବୁ ମନେଅଛି ।

ସୁଲୋଚନା : ତୁମେ ବୁଲିଲାବେଳେ ମୁଁ ଏ କବାଟ ପାଖରେ ଠିଆହେଲେ ତମେ ମତେ ଦୃଶ୍ୟ ହେଉଥିବ ।

ଚନ୍ଦ୍ରମଣି : ହଁ, ଦୃଶ୍ୟ ହେଉଥିବ ।

ସୁଲୋଚନା : ବୁଲିସାରି···

ଚନ୍ଦ୍ରମଣି : ସୁନାପିଲାଟି ପରି ଘରକୁ ଫେରି ଆସିବ ।

[ବାହାରକୁ ଗଲେ]

[ ସା'ନ୍ତାଣୀ ହସ ହସ ମୁହଁରେ ଘର ଭିତରକୁ ଆସି ଭିତର ପଟକୁ ଚାଲିଗଲେ । କବାଟ ସେମିତି ଖୋଲାଥାଏ । କିଛିଏ ପରେ ମଲ୍ଲୀମା' ପାଦ ଚପି ଚପି ଆସି ସଦର ଦରଜାରେ ଠିଆହୋଇ ଝୁଙ୍କିପଡ଼ି ଦେଖୁଥାଏ, କିଛିଏ ପରେ ଭିତରୁ ଆସିଲା ମକର ]

ମକର : ହେ ମଲ୍ଲୀମା' କ'ଣ ଦେଖୁଚୁ ?

ମଲ୍ଲୀମା : (ମକରକୁ ମରବ ରହିବାର ସଙ୍କେତ ଦେଇ ହାତ ଗଳାଇ) ଟହଲ ମାରୁଚନ୍ତି ।

ମକର : କିଏ ?

ମଲ୍ଲୀମା : ବାବୁ ।

ମକର : କ ଟହଲ ?

ମଲ୍ଲୀମା : ଆମର ଏ ଦୁଆର ମୁହଁରୁ ରସ୍ତା ଉପରେ ଏ ପାଖକୁ ଟହଲ ପୁଣି ଫେରିଆସି ସେ ପାଖକୁ ଟହଲ ।

ମକର : କାହିଁକି ?

ମଲ୍ଲୀମା : କ'ଣ କାହିଁକି ?

ମକର : ସେ କାହିଁକି ଏମିତି ଟହଲ ମାରୁଚନ୍ତି ?

ମଲ୍ଲୀମା : ସା'ନ୍ତାଣୀଙ୍କ ହୁକୁମ୍ ହୋଇଥିବ । (ଭିତରୁ ସା'ନ୍ତାଣୀ ଆସିଲେ)

ସୁଲୋଚନା : କ'ଣ ହେଉଛ ? ମକର—

ମକର : ମୁଁ ବଜାରକୁ ଯାଉଚ ମା' ।

ସୁଲୋଚନା : ହଁ ଯା' । ହଁ, ମୁଁ କହିବାକୁ ଭୁଲିଯାଇଚ, ବଜାରରୁ ଫଳ ଆଣିବୁ ।

ମକର : ଆଜ୍ଞା । (ବାହାରିଗଲା)

ମଲ୍ଲୀମା : ମା' ସା'ନ୍ତାଣୀ···

ସୁଲୋଚନା : କ'ଣ କହୁଚୁ ?

ମଲ୍ଲୀମା : ବାବୁ ଆମର କେମିତି ମନ ଖୁସିରେ ରସ୍ତା ଉପରେ ଟହଲ ମାରୁଚନ୍ତି ! ଏପାଖରୁ ସେପାଖ— ସେପାଖରୁ ଏପାଖ ।

ସୁଲୋଚନା : (ହସି ହସି) ହଉ ତୁ ଯା' । ( ମଛୀମା' ଭିତରକୁ ଗଲ । ସା'ନ୍ତାଣୀ ଆଗେଇ ଯାଇ ସଦର ଦରଜାରେ ଠିଆହୋଇ ରାସ୍ତା ଉପରକୁ ଲକ୍ଷ୍ୟ କଲେ—ବାବୁ ଠିକ୍ ଭାବରେ ବୁଲାଚାଲ କରୁଛନ୍ତି, ସେଥିପାଇଁ ମୁଖରେ ସନ୍ତୋଷ ଭାବ । ସେ ଭିତରକୁ ଗଲେ । କିଛି ସମୟ ପରେ ସା'ନ୍ତାଣୀଙ୍କ ଦାସୀ ଏ ଘରକୁ ଆସି ସେମିତି ସଦର ଦରଜା ପାଖରେ ବାହାରକୁ ଲକ୍ଷ୍ୟ କରି ଠିଆହେଲା । ବେଶ୍ କିଛି ସମୟପରେ ସା'ନ୍ତାଣୀ ଆସିଲେ )

ସୁଲୋଚନା : କ'ଣ ଦେଖିଲୁ ମାଣିକ ?

ମାଣିକ : କିଛି ନାଇଁ ସା'ନ୍ତାଣୀ । ଜମିଦାର ବାବୁ ଏ ପାଖରୁ ସେ ପାଖକୁ ଯାଉଚନ୍ତି—ସେ ପାଖରୁ ଏ ପାଖକୁ ଆସୁଚନ୍ତି ।

ସୁଲୋଚନା : (ଖୁସି ମନରେ) ହଉ ତୁ ଯା' । (ମାଣିକ ବାହାରିଗଲା । ସା'ନ୍ତାଣୀ ରାସ୍ତାକୁ ଲକ୍ଷ୍ୟ କରି ଠିଆହୋଇ ରହିଲେ । ଟିକେ ପରେ ଗଳା ଖଙ୍କାରିଲେ—ବାବୁ ସେଠିକି ଆସିଲେ)

ଚନ୍ଦ୍ରମଣି : ତୁମେ ଗଳା ଖଙ୍କାରିଲ କି ?

ସୁଲୋଚନା : ହଁ, ମୁଁ ତ ତମକୁ କହିଚି—ମୋ ମନ ଗଲେ ମୁଁ ଗଳା ଖଙ୍କାରିବି ।

ଚନ୍ଦ୍ରମଣି : ସେଇ କଥା ପରା ? ଯେମିତି ମୋ କାନରେ ପଡ଼ିଚି ମୁଁ ଆସିଲି ।

ସୁଲୋଚନା : ଭଲ କଥା, ଏବେ ଏଠି ଟିକେ ରୁହ, ମୁଁ ତମକୁ ପରୀକ୍ଷା କରିବି ।

ଚନ୍ଦ୍ରମଣି : ମତେ ଆଜ ଲାଗୁଚି, ସତେ ଯେମିତି ମୁଁ ଗୋଟାଏ ଯୁଗ ପରେ ପଦାକୁ ଆସିଲି, ତୁମେ ଆଉ କି ପରୀକ୍ଷା କରିବ ?

ସୁଲୋଚନା : ତୁମେ ଡରିଯାଅ ନାହିଁ, ଯାହା କରୁଚି ତମରି ଭଲ ପାଇଁ ।

ଚନ୍ଦ୍ରମଣି : ସେକଥା କ'ଣ ମୁଁ ଜାଣିନ ? ଅକ୍ଷରେ ଅକ୍ଷରେ ତମ କଥା ମାନିଛି । ସକାଳୁ ଏ ସନ୍ଧ୍ୟାରେ...କେତେଟି ?... ଅଧଘଣ୍ଟା—ହଁ ଅଧଘଣ୍ଟା । ବୁଲଚଲ କରିବ ।

ସୁଲୋଚନା : ଏଇ ଦେଖ, ଘରେ ନପଶୁଣୁ ମୁଣ୍ଡରେ ଗୁଳ ବାଜିଲଣି । ଆଜ ବୁଲିବାକୁ ଆସି ମିଛ କଥା କହିବା ଆରମ୍ଭ କରି ଦେଲଣି ...ଅଧଘଣ୍ଟା ନୁହେଁ—ପା' ଘଣ୍ଟା । ମୁଁ ତମକୁ ପା' ଘଣ୍ଟା କହିଛି ।

ଚନ୍ଦ୍ରମଣି : ଓ, ହଁ—ମୋର ଭୁଲ ହେଇଯାଉଥିଲା । ଅଧ ଘଣ୍ଟାଏ ନୁହେଁ ପା' ଘଣ୍ଟା ।

ସୁଲୋଚନା : ଆମ ଏ ଦୁଆର ମୁହଁରୁ ଏ ପାଖକୁ ଦଶ କଦମ—ସେ ପାଖକୁ ଦଶ କଦମ ।

ଚନ୍ଦ୍ରମଣି : ଠିକ୍ ।

ସୁଲୋଚନା : ପାକେଟ୍‌ରେ ଘଣ୍ଟା ଅଛି ।

ଚନ୍ଦ୍ରମଣି : ଅଛି ।

ସୁଲୋଚନା : ଯେମିତି ପା' ଘଣ୍ଟା ପୂରିବ...

ଚନ୍ଦ୍ରମଣି : ଯାହା କହିଛ, ସୁନାପିଲାଟି ପରି ଘର ଭିତରକୁ ଆସି ପଲଙ୍କରେ ଶୋଇପଡ଼ିବ ।

ସୁଲୋଚନା : ମୋ' ଶୋଇବାଘର ପଲଙ୍କ ନୁହେଁ, ଏଇ ବାହାର ଘର ପଲଙ୍କ ।

ଚନ୍ଦ୍ରମଣି : ହଁ, ଏଇ ଘର ପଲଙ୍କ ।

ସୁଲୋଚନା : ହଉ ଯାଅ । (ବାବୁ ପାହାଚ ତଳକୁ ଓହ୍ଲେଇଗଲେ । ସା'ନ୍ତାଣୀ ସେଇଠି କବାଟ ପଛପଟେ ଠିଆହେଇ ରହିଲେ । ସମସ୍ତ

ବଡଘାଉଚ—ସାଂ'ନ୍ତାଣୀ ମଝିରେ ମଝିରେ ଅସ୍ଥିର ହୋଇ-ପଡ଼ୁଚନ୍ତି । ତା'ପରେ ଘଣ୍ଟାକୁ ଚାହିଁଲେ । ଟିକେ ପରେ ପୁଣି ଗଲା ଖଙ୍କାରିଲେ । ବାବୁ ଧଇଁସଇଁ ହୋଇ ଆସିଲା ପରି ଆସିଲେ )

ଚନ୍ଦ୍ରମଣି : କ'ଣ ହେଲା ?

ସୁଲୋଚନା : ବୁଝିପାରୁନ କ'ଣ ହେଲା ? ମୁଁ ଘଣ୍ଟାକୁ ଝୁଙ୍କି ଚାହିଁଲି, ତେମେ ଦୃଶ୍ୟ ହେଲନି ।

ଚନ୍ଦ୍ରମଣି : ନିସ୍ତୁମ କରି କହୁଚ ମୁଁ ଦଶକଦମ୍ ଭିତରେ ଥିଲି ।

ସୁଲୋଚନା : ମିଛ କହୁଚ ।

ଚନ୍ଦ୍ରମଣି : ନିସ୍ତୁମ କରି କହୁଚ ମୁଁ ମିଛ କହୁନାହିଁ ।

ସୁଲୋଚନା : ମିଛ ଯେବେ କହୁନ ତେବେ କଦମ୍ କମେଇଦିଅ ।

ଚନ୍ଦ୍ରମଣି : କେତେ ?

ସୁଲୋଚନା : ପାଞ୍ଚ । ପାଞ୍ଚ ଭିତରେ ଠିକ୍ ଦୃଶ୍ୟ ହବ ।

ଚନ୍ଦ୍ରମଣି : (ବିକଳରେ) ସାତ ହେଲେ କେମିତି ହ'ନ୍ତା ।

ସୁଲୋଚନା : ନାଇଁ ନାଇଁ ପାଞ୍ଚ । ପାଞ୍ଚ କଦମରେ ରୁହ—ପା'ଘଣ୍ଟା ବଜିଲେ ଘର ଭିତରକୁ ଆସ । ମୁଁ ଯାଉଚି(ଚାଲିଗଲେ । ମନ ଦୁଃଖରେ ବାବୁ ସେ କବାଟ ପାଖରେ ଠିଆ ହୋଇଚନ୍ତି, ଏତିକି-ବେଳେ ନୋକା ଆସି ବାବୁଙ୍କ ହାତରେ ଖଣ୍ଡେ କାଗଜ ଗୁଞ୍ଜିଦେଲା)

ଚନ୍ଦ୍ରମଣି : (ଚମକି) କିଏ ?

ନୋକା : ମୁଁ ନୋକା ।

ଚନ୍ଦ୍ରମଣି : ଏଇଟା କ'ଣ ?

ନୋକା : ଦେୱାଙ୍ଗ ଚିଠି ଦେଇଚନ୍ତି । ଆପଣ ତୁରନ୍ତ ପିବେ ।

ଚନ୍ଦ୍ରମଣି : (ଚିଠି ପଢ଼ିଲେ । ଉସ୍‌ମାନ୍‌ର ସ୍ୱର) ବାବୁ ହେ, ପ୍ରାଣବାନ୍ଧବ, ମୁଁ ଉସ୍‌ମାନ୍ ବାଇ ଲେଖୁଚି । କଲିକତା ଯାଇଥିଲି, କାଲି ଆସିଲି । ତମ ବାଟ ଚୁହିଁ ବସିଚି । ଏ ପତ୍ର ପାଇ ତୁରନ୍ତ ଚୁଲିଆସିବ । ତମକୁ ମୋହ ଗଣ—ତମର ତାଙ୍କ ଗଣ । ଦ'ମାସ ହେଲାଣି ତମ ଶ୍ରୀମୁଖ ଦର୍ଶନ କରିନାହିଁ । ନ ଆସିଲେ ମୁଁ ବିଷ ଖାଇଦେବି ଜାଣିଥାଅ । ( ଚିଠି ପଢ଼ିସାରି ବାବୁ ସେଇଠି ମୁଣ୍ଡରେ ହାତ ଦେଇ ବସିପଡ଼ିଲେ)

ଚନ୍ଦ୍ରମଣି : ମାରିଦେଲା ! ଏ ପାଖରେ ଇଏ ମୋ ହାତ ଗୋଡ଼ରେ ବେଡ଼ିପକେଇ ବାନ୍ଧିରଖିଚି, ସେ ପାଖରେ ସିଏ ଧମକେଇ-ଲାଣି ତୁରନ୍ତ ନ ଗଲେ ବିଷ ଖାଇଦେବ ।

ସୁଲୋଚନା : (କହୁ କହୁ ଆସିଲେ) ଏ କ'ଣ, ସେଠି ଏମିତି ବସିପଡ଼ିଚ କାହିଁକି ? ସେ କିଏ ? ହାତରେ ସେ କି କାଗଜ ?

ଚନ୍ଦ୍ରମଣି : (ହଠାତ୍) ହେଇ ଟୋକା, ଏ କାଗଜରେ ଯୋଉ ବାବୁଙ୍କ ନାଁ ଲେଖାହେଇଚି ତାଙ୍କ ଠିକଣା ହେଲା—ତୁ ଏଠୁ ନାକ-ସିଧା ଚୁଲିଯା, ସେଠୁ ବାଁକୁ ମୋଡ଼ିବୁ—ସେଠୁ ଉତ୍ତର ମୁହଁ ହେଇ ପୁଣି ଦକ୍ଷିଣକୁ ମୋଡ଼ିବୁ । ସେଇଠି ପଶ୍ଚିମପଟେ କି ପୂର୍ବ ପଟେ ତାଙ୍କ ଘର—ଏଇ ନେ। କାଗଜ ନେ ଯା' ।

(ନୋକା ଚୁଲିଗଲା)

ସୁଲୋଚନା : କ'ଣ ହେଲା ତମର ? ସେ ପିଲାକୁ ଏ ଯୋଉ ଠିକଣା ତମେ ବତେଇଲ, ତାକୁ ବାଁ ଡାହାଣ, ଉତ୍ତର ଦକ୍ଷିଣ ଦେଖେଇଲ, ସେଥିରେ ସେ ବାବୁଙ୍କ ଘର ସେ ଖୋଜି ପାଇବ କି ?

ଚନ୍ଦ୍ରମଣି : (ବିରକ୍ତ) ନ ଯାଉ ହେ ! ମୋର କ'ଣ ଗଲା ? ଘଣ୍ଟାଏ ହେଲା ମୋ' ସାଙ୍ଗରେ ବକର ବକର ଲଗେଇଚ ।

ସୁଲୋଚନା : ତମେ ଆଜ ବୁଲିବାକୁ ଯିବନାଇଁ କି ?

ଚନ୍ଦ୍ରମଣି : ନାଇଁ ।

ସୁଲୋଚନା : କ'ଣ ଥକା ଥକା ଲାଗୁଚି ?

ଚନ୍ଦ୍ରମଣି : ହିଁ-ଅ, ସେମିତି ଟିକେ ଲାଗୁଚି ।

ସୁଲୋଚନା : ହଉ, ଆସ ଏ ଚୌକିରେ ବସ, ମୁଁ ତମପାଇଁ କ'ଣ ଟିକିଏ ପିଇବାକୁ ଆଣେ । (ସା'ନ୍ତାଣୀ ଭିତରକୁ ଗଲେ, ବାବୁ ଯାଇ ଚୌକିରେ ବସିଲେ)

ଚନ୍ଦ୍ରମଣି : (ମନକୁ ମନ) ଶୁଣାଯାଏ, ପୂର୍ବେ ଗୋଟାଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାପାଇଁ ମାଟି ତଳେ ସୁଡ଼ଙ୍ଗର ବ୍ୟବସ୍ଥା ଥିଲା । ସେମିତି ଏ କାଳୀଗଳିରୁ ତେଲେଙ୍ଗାବଜାର ଯିବାଯାଏ ଗୋଟିଏ ସୁଡ଼ଙ୍ଗର ବ୍ୟବସ୍ଥା ହୋଇପାରନ୍ତା ନାହିଁ ! କ'ଣ କରିବି, ସତରେ ଯଦି ସେ ବିଷ ଖାଇ ମରିଯାଏ, ସେ ଦୋଷ ତ ମତେ ଲାଗିବ ! ମୋ' ବିରୁଦ୍ଧରେ ସେ ବିଷ ଖାଇ ମରିଚି ବୋଲି ଯଦି ସେ କାଗଜ ଖଣ୍ଡିକରେ ଲେଖି ଦେଇଯାଏ, ତେବେ ତ ମୁଁ ଥାନା ହାଜତକୁ ଯିବି ! ଏକଥା କ'ଣ ଏ ସା'ନ୍ତାଣୀଟା ବୁଝିବ ! (ହାତରେ ଗ୍ଲାସ୍‌ଧରି ସା'ନ୍ତାଣୀ ଆସିଲେ)

ସୁଲୋଚନା : ନିଅ, ଏତକ ପିଇଦେଲ ।

ଚନ୍ଦ୍ରମଣି : କ'ଣ ଇଏ ?

ସୁଲୋଚନା : ଫଳରସ ।

ଚନ୍ଦ୍ରମଣି : କ ଫଳ ?

ସୁଲୋଚନା : (ରାଗି) ଚନ୍ଦ୍ରଟି ମତେ ?

ଚନ୍ଦ୍ରମଣି : ଏଁ, କ'ଣ ହେଲା, ରାଗୁଚ କାହିଁକି ?

ସୁଲୋଚନା : ରାଗିବି ନାହିଁ ? ଫଳ ତ ଫଳ, ଆଜି କ ଫଳ କ'ଣ ? ତମକୁ କ'ଣ କଏ ଡେମିର ଫଳ, ବର ଫଳ, କରମଙ୍ଗା-ଫଳ ସରବତ ତିଆରି କରି ଦଉଚ । ନିଅ ପି'ଦିଅ ।

ଚନ୍ଦ୍ରମଣି : (ଅଧାପିଇ) କଥା କ'ଣ କି···

ସୁଲୋଚନା : ଆଗେ ଗ୍ଲାସ୍ ଖାଲି କର ପରେ କଥା କହିବ ।

ଚନ୍ଦ୍ରମଣି : ହଉ, କେତେ ହୁକୁମ୍ ଜାରି କରୁଚ କହ (ପିଇଲେ) କଥା କ'ଣ କି···ନାଇଁ ତମେ ଆସ—ମୋ ପାଖକୁ ଆସ (ସୁଲୋଚନା ଗଲେ) ଏଇ ଦି'ସ୍ପର ଦିନ ହେଲା ରୋଜ୍ କେମିତି ମୋ ମୁଣ୍ଡ ବୁଲେଇ ଦଉଚି । କେତେବେଳେ ବାନ୍ତି ମାଡୁଚି, କେତେବେଳେ ପେଟ ଦରଜ ।···ଡରରେ ଏକଥା ମୁଁ ତମକୁ କହୁନଥିଲି ।

ସୁଲୋଚନା : କିଛି କହିବାର ଦରକାର ନାହିଁ । ମୁଁ ସବୁ ବୁଝିଲି ।

ଚନ୍ଦ୍ରମଣି : (ଖୁସିରେ) ମୁଁ ଜାଣେ ପରା, ତମେ ନ ବୁଝିଲେ ଆଉ କଏ ବୁଝିବ ?

ସୁଲୋଚନା : ସେଇ କଥା ତ ! ଏ ଯାଏ କିଛି ନଥିଲା, ଆଜି ଯେମିତି ଟିକେ ପଦାକୁ ବୁଲିବାକୁ ଯାଇଚ, କାହାକୁ ଦେଖିଚ କି କାହା କଥା ଭାବଚ—ସେଥିପାଇଁ ଏ ସବୁ ଢଙ୍ଗ, ଏସବୁ ପେଖନା ବାହାରିଲାଣି ।

ଚନ୍ଦ୍ରମଣି : ନାଇଁ ନାଇଁ, ପେଖନା ନୁହେଁ ।

ସୁଲୋଚନା : ସେତେବେଳେ ସେ ଚୋକାଟା କଏ ଆସିଥିଲା ?

ଚନ୍ଦ୍ରମଣି : ତେମେ ତବ ଆଖି ଆଗରେ ତାକୁ ଦେଖିଲ ।

ସୁଲୋଚନା : ସିଏ ନ ହେଲେ ଆଉ କଏ ଆସି କାନରେ ମନ୍ତ୍ର ଫୁଙ୍କି ଥିବ । ମୁଁ କ'ଣ ଜାଣିନାଇଁ ତମ ଗୁଣ !

ଚନ୍ଦ୍ରମଣି : ମୁଁ କ'ଣ ମନାକରୁଛ ତମେ ଜାଣିନ ବୋଲି ।

ସୁଲୋଚନା : ସେଇ କଥା । ଦେହ ତମର କଣ୍ଟ ହେଇନ, ଘରେ ଚୁପ୍ ହେଇ ଶୁଅ । ଆଜ ବୁଲିଯିବା କଥା ନୁହେଁ । (ସା'ନ୍ତାଣୀ ଗୁଲିଗଲେ)

ଚନ୍ଦ୍ରମଣି : ଆରେ ଆରେ, ଗୁଲିଯାଉଚ କ'ଣ ? ଟିକେ ଶୁଣିଯାଅ । (ସା'ନ୍ତାଣୀ ଫେରିଲେ ନାହିଁ) ହାତ୍ ତେରିକରେ !

ସୁଲୋଚନା : (ଭିତରୁ କନ୍ଧ କନ୍ଧ ଏ ଘରକୁ ଆସିଲେ) ମକର, ମକର···

ମକର : ଆଜ୍ଞା ମା' ସାଆନ୍ତାଣୀ ! (ମକର ଆସିଲା)

ସୁଲୋଚନା : ତୁ ଆଉଥରେ ବଜାରକୁ ଯା' ।

ମକର : ମୁଁ ସବୁ ସରଞ୍ଜାମ ଆଣିଚ ମା' ।

ସୁଲୋଚନା : ସେକଥା ନୁହେଁ, ବଜାରରୁ ପୋଟଳ ଆଉ ସଜନାଛୁଇଁ ଆସିବ ।

ମକର : ପୋଟଳ ତ ମା' ବଜାରକୁ ନୂଆ ଆସିଚ, କାହିଁରେ କ'ଣ ଦାମ୍ । ସେର ଆଠଣା ହାଙ୍କୁଥିଲା ।

ସୁଲୋଚନା : ଅଠଣା ଛୁଡ଼ ଅଠଙ୍କା ହେଲେ ହ ଅଣିବୁ । ବାବୁଙ୍କ ଦେହ ଭଲନାଇଁ ବୋଲି କହୁଚନ୍ତ । ପଥ୍ୟ ପାଚନ ପାଇଁ

ଖାଲି ଜଗବନ୍ଧା ହୋଇ ପୋଟଳ ସଜନାଛୁଇଁ ଖୋଳ ହବ, ପୁଝାରୀଙ୍କୁ କହିଦେବୁ । ତୁ ଯା' । (ମକରା ଚାଲିଗଲା)

ସୁଲୋଚନା : (ବାବୁଙ୍କୁ) ଶୁଣିଲ ତ ! ତମ ପା' ପାଇଁ ଯୋଉ ଫୁଲକୋବି କାଲିଆ ଆଜି ଆଣୁ ବନ୍ଧାକୋବି ପଡ଼ି ଯାଇଁ ବଗଡ ହୋଇଥିଲା, ସେ ଉଡ଼ିଲା । ତମ ଦେହ ତ ଏମିତି କହୁଚ, ପୋଟଳ ସଜନାଛୁଇଁ ଖୋଳ ଖାଇବ । ମୁଁ ଯାଉଚ ।

ଚନ୍ଦ୍ରମଣି : ଟିକେ ଶୁଣ, ଶୁଣ (ସା'ନ୍ତାଣୀ ପଛକୁ ଫେରି ନ ଚାହିଁ ହାତ ହଲାଇ ନାସ୍ତି ସୂଚକ ସଙ୍କେତ ଦେଇ ଚାଲିଗଲେ)

ଚନ୍ଦ୍ରମଣି : ନାଃ । ଆଜି ବୁଝେଁ—ଏ ସା'ନ୍ତାଣୀଟାକୁ ଇମିତି ଗୋଟାଏ ବୁଦ୍ଧି ଶିଖେଇବି, ତା ବୋପା ଚଉଦ ପୁରୁଷ···ନା, ତା' ବୋପା ନାଁ ଧରିବିନି । କେତେବେଳେ ସ୍ତ୍ରୀ' କାନରେ ପଡିଗଲେ ମତେ ଅକୂଳରେ ଭସେଇଦବ । ବୋପା ଥାଉ । ତାକୁ ଇମିତି ବୁଦ୍ଧି ଶିଖେଇବି, ତା' ତଳ ସାତପୁରୁଷରୁ ଉପର ସାତ ପୁରୁଷ ଯାଏ ହେଜ କରୁଥିବ । (ସେଇ ଚୌକିରେ ବସି ରହି ହ' ହାତରେ ଚୌକିର ଦୁଇ ପାଖରେ ଦୁଇ ବାଡ଼ାକୁ ଚିପି ଧରିଲେ) ହୁଁ-ହୁଁ-ହୁଁ (ଆପେ ଚୌକିରୁ ତଳେ କଣ୍ଠରୁ ହୋଇପଡ଼ି ଖୁବ୍ ବଡ଼ ପାଟି କଲେ···) ମରିଗଲି ଲୋ, ମରିଲେ ! ମରିଲେରେ ବାବା—ଏ ମୁଣ୍ଡ ଗଲା, ଏ ପେଟ ଗଲା (ଆହୁରି ଚିତ୍କାର କରି) ଏ ଶରୀର ହ'ଖଣ୍ଡ ହୋଇଗଲା !

ସୁଲୋଚନା : (ଭିତରୁ କହି କହି) କ'ଣ ହେଲା, କ'ଣ ହେଲା ? (ବାବୁଙ୍କ ପାଖରେ ବସିପଡ଼ି ତାଙ୍କ ମୁଣ୍ଡକୁ ନେଇ କୋଳରେ ରଖି) କ'ଣ ହେଲା ଗୋ ତମର ? ଏ କିଟାରେ ପଡ଼ି କାହିଁକି ଏମିତି ହଉଚ ?

ଚନ୍ଦ୍ରମଣି : ଚୌକି ଉପରେ ବସିଥିଲି, ଶୋଇବାକୁ ମନ ହେଲା । ଉଠି ଠିଆ ହେଉଚକି ନାହିଁ ମତେ ଝାଙ୍କି ଦେଇ, ବୁଲେଇ ଦେଇ, ଏଇଠି ଏମିତି କଚୁଡ଼ି ଦେଲା ।

ସୁଲୋଚନା : କଏ ?

ଚନ୍ଦ୍ରମଣି : ପେଟ ଖୋଞ୍ଚିଦେଲା; ତାକୁଠୁଁ ତଳପା ଯାଏ ଜଳିଗଲା ।

ସୁଲୋଚନା : ମୁଁ ମରିଯାଏ ଟି ! ବୁଝିଲି, ମତେ ଜଣାପଡୁଚି ସେଇ ଯୋଉ ନଅଁ ପାଉଁଶ ନିଶାପାଣି ଗୁଡ଼ାକ ଗିଳୁଥିଲ ଏ ତା'ରି ଫଳ ।

ଚନ୍ଦ୍ରମଣି : ନାହିଁ ଗୋ, ତା' ନୁହେଁ । ତମେ ମତେ ଟିକେ ଧରାଧରି କରି ପଲଙ୍କ ଉପରକୁ ନବଟି, ମୁଁ ଭଲରେ ଟିକେ ଶୁଏ ।

ସୁଲୋଚନା : ଆସ । ମୋ କାନ୍ଧରେ ଏମିତି ଭରାଦେଇ ଆସ ।

ଚନ୍ଦ୍ରମଣି : ତମେ ହାମୁଡ଼ି ପଡ଼ିଯିବ ନାହିଁ ତ ?

ସୁଲୋଚନା : ପଡ଼ିଲେ ପଡ଼ିବ—କ'ଣ ହେଇଗଲା ସେଇଠୁ ?···ଭଲ କରି ମୋ କାନ୍ଧରେ ଭରାଦେଇ ଆସ । (ଚନ୍ଦ୍ରମଣି ଯାଇ ଖଟ ଉପରେ ଶୋଇଲେ, ସା'ନ୍ତାଣୀ ସେଇଠି ବସିଲେ)

ସୁଲୋଚନା : ହଁ, କ'ଣ ତମେ କହୁଥିଲଟି, ଏ ନିଶାପାଣି ଦୋଷରୁ ନୁହେଁ ?

ଚନ୍ଦ୍ରମଣି : ନାହିଁ ଗୋ, ତା ନୁହେଁ । ଇଏ ହଉଚି ଗ୍ରହଦୋଷ । ପାଞ୍ଜିରେ ଶନି ଚଳନ ହେଇଚି—ମୋର ଶନିଦଶା । ଶନି ଗ୍ରହ ମତେ ଟାଣୁଚି ।

ସୁଲୋଚନା : କେମିତି ଜାଣିଲ ?

ଚନ୍ଦ୍ରମଣି : ମାଧବ ଖଡ଼ିରତ୍ନେ ଆସିଥିଲେ ।

ସୁଲୋଚନା : ଝଡ଼ରନ୍ଦ୍ରେ ଆସିଥିଲେ ? କାଇଁ ମୁଁ ତ ଜାଣିପାରିଲି ନାହିଁ !

ଚନ୍ଦ୍ରମଣି : ଏଁ ! ଝଡ଼ରନ୍ଦ୍ରେ ଅସିଥିଲେ ବୋଲି ମୁଁ କହିଲି କି ?

ସୁଲୋଚନା : ଏଇ କହିଲ ପରା ।

ଚନ୍ଦ୍ରମଣି : ଭୁଲ୍, ଭୁଲ୍ କହିଲି—ତାଙ୍କ ପୁଏ ଆସିଥିଲେ ।

ସୁଲୋଚନା : ତାଙ୍କର ପୁଣି ପୁଏଟିଏ କାହୁଁ ଅସିଲା ! ସେ ତ ଆଣ୍ଠୁକୁଡ଼ା ।

ଚନ୍ଦ୍ରମଣି : ଓହୋ, ଏ ଯୋଉଁ ମୁଣ୍ଡବୁଲା, ଗୁଡ଼କେଞ୍ଚା, ପେଟବଥା ଏଥିରେ ମୋର ହବୁ ଭୁଲ ହେଇଯାଉଚି । ଜାଣିଚ ତ, ଝଡ଼ରନ୍ଦ୍ର ସହିତ ଆମର କେମିତି ଭାବନାକ । ଏଇ ତିନ ଭାଇଙ୍କ ତଳେ ତାଙ୍କର ଭାଇର ପିଲା ହାତରେ ଏ ଶନି ଚଳନ କଥା କହି ପଠେଇଥିଲେ ।

ସୁଲୋଚନା : ଶନି ଚଳନ ପାଇଁ ବ୍ୟବସ୍ଥା କଣ କହନାହାଁନ୍ତି ?

ଚନ୍ଦ୍ରମଣି : ହଁ ଏସବୁ କହି ପଠେଇଚନ୍ତି—କଣ୍ଟୁ ପୁଣ୍ୟକର୍ମ କଲେ ଶନି ଗ୍ରହ ଦୋଷ କଟିଯିବ, ଆଉ···

ସୁଲୋଚନା : ଆଉ ?

ଚନ୍ଦ୍ରମଣି : ଆଉ, ନିଶାପାଣିରୁ ମୋର ମନ ଛୁଟିଯିବ ।

ସୁଲୋଚନା : ଏ କଥା ବି କହିଚନ୍ତି ?

ଚନ୍ଦ୍ରମଣି : ହଁ, ସେ ଝୋକା ଗୋଟି ଗୋଟି କରି ମତେ ସବୁ ବୁଝେଇ କହିଚି ।

ସୁଲୋଚନା : ହେ ମା କଟକଚଣ୍ଡୀ କହିବଟି କି ପୁଣ୍ୟକର୍ମ କରିବାକୁ କହିଚନ୍ତି ?

ଚନ୍ଦ୍ରମଣି : (ହଠିବସି) କହୁଚନ୍ତି...

ସୁଲୋଚନା : ଆଲୋ ଆଲୋ, ଉଠିଲ କାହିଁକି ?

ଚନ୍ଦ୍ରମଣି : ତମ ସାମ୍ନାସାମ୍ନି ଏମିତ ନ ବସିଲେ ପାଟିରୁ ମୋର କଥା ବାହାରବନି ।

ସୁଲୋଚନା : ଧନ୍ୟ ତମେ, ଏତେ ସବୁ ଆସି ହେଲଣି...

ଚନ୍ଦ୍ରମଣି : ଶୁଣ, ଖଡ଼ରନ୍ତେ କହି ପଠେଇଚନ୍ତି ମୁଁ ଏବେ ଭୁବନେଶ୍ୱର ଯାଇ ତିନି ଦିନ ରହିବ—ସେଠି ଲିଙ୍ଗରାଜଙ୍କ ପାଖରେ ଧାରଣା ପଡ଼ିବ—ଦିନକୁ ଏକ ଶହ ଏକ ମାଠିଆ ପାଣି ଢଳାହବ—ବ୍ରାହ୍ମଣ ଭୋଜନ ହବ । ଏଥିକୁ ଗୁହିଁ ଯାହା ଟଙ୍କା ଦରକାର...

ସୁଲୋଚନା : (ମନରେ କିଛି ସନ୍ଦେହ) ସତ କହୁଚ ?

ଚନ୍ଦ୍ରମଣି : ଏ କଥାରେ କିଏ ମିଛ କହେ ?

ସୁଲୋଚନା : ଦେଖି ଦେଖି, ମୋ ଆଡ଼କୁ ଟିକେ ଭଲକରି ମୁହଁ ଟେକି ଗୁହଁଲ, ମୁଁ ଦେଖେ ତମ ମୁହଁ ।

ଚନ୍ଦ୍ରମଣି : ଦେଖୁନ, ଦେଖ (ବାବୁ ମୁହଁ ଦେଖାଇଲେ)

ସୁଲୋଚନା : ହୁଁ, ବୁଝିଲି ।

ଚନ୍ଦ୍ରମଣି : (ଖୁସିରେ) ମୁଁ ଜାଣେ ପରା, ତମେ ନିଶ୍ଚୟ ବୁଝିବ । ଘରର ଘରଣୀ ତମେ...ମୁଁ କହୁଥିଲି...

ସୁଲୋଚନା : କ'ଣ ଆଜ କହୁଥିଲ ?

ଚନ୍ଦ୍ରମଣି : ମୁଁ ଏଇ ଭୁବନେଶ୍ୱର ଯିବା କଥା...କଥାରେ ଅଛି ଭୁରନ୍ତ କର୍ମ—ମହାପୁଣ୍ୟ । ଦେଲ, ଟଙ୍କା ଶହେ ପାଞ୍ଚଟା' ବାହାର କଲ, ମୁଁ ଏଇ ଦିନ ଗାଡ଼ିରେ ବାହାରିଯିବି ।

ସୁଲୋଚନା : ନାଇଁ ଗୋ, ମୁଁ ଯାହା ବୁଝିଲି ତମେ ଘରୁ ଗୋଡ଼ କାଢ଼ି କୁଆଡ଼େ ଯିବା ଦରକାର ନାହିଁ । ଦେହ ଏଇଠି ଭଲହୋଇ ଯିବ । (ଉତ୍ତରକୁ ଅପେକ୍ଷା ନ ରଖି ସା'ନ୍ତାଣୀ ତରବର ହୋଇ ଘରୁ ବାହାରଗଲେ । ଏ ପାଖରେ ଘରରେ ବାବୁଙ୍କ ଆଖି ଢ଼'ଳା ଢଳିଯାଉଥାଏ । ସେ ସଙ୍ଗେ ସଙ୍ଗେ ସେ ଖଟ ଉପରୁ ପୁଣି ତଳକୁ ଦୁଲ୍‌କରି କଣ୍ଡୁଡ଼ ହୋଇ ପଡ଼ିଲେ । ଶବ୍ଦ ଶୁଣି ସା'ନ୍ତାଣୀ ଘର ଭିତରକୁ ଦୌଡ଼ି ଆସିଲେ) କ'ଣ ହେଲା ? ପୁଣି କ'ଣ ହେଲା ? ପୁଣି ତଳେ ପଡ଼ିଗଲ ? କଥା କହୁନ ! ଆଖି ବୁଜି ହୋଇ ଯାଇଛ ! (ଡାକିଲେ) ମକର୍‌, ହେ ମଲ୍ଲୀମା !

ଚନ୍ଦ୍ରମଣି : (ସା'ନ୍ତାଣୀଙ୍କ ହାତ ଧରି) ଥାଉ, କାହାରିକୁ ଡାକ ନାହିଁ । କହୁଚି ପରା ତେମେ ପାଖରେ ଥିଲେ ମୋର ସବୁ ।

ସୁଲୋଚନା : କହୁଛ, ତମେ ଆଖି କାହିଁକି ବୁଜିଥିଲ ?

ଚନ୍ଦ୍ରମଣି : ମୁଁ ବୁଜିନାହିଁ, ତଳେ ପଡ଼ିଯାଇ କେଇ ସେକେଣ୍ଡ ପାଇଁ ବେହୋସ ହୋଇଗଲି ।

ସୁଲୋଚନା : ମୁଁ ମରିଯାଏ ଲୋ, ତମେ ବେହୋସ ହୋଇଗଲ ! ମୁଁ କ'ଣ କରିବି ?

ଚନ୍ଦ୍ରମଣି : ବ୍ୟସ୍ତ ହୁଅନା, ଏଇ ଦେଖ ମୋର ପୁଣି ହୋସ୍‌ ଆସିଲାଣି ।

ସୁଲୋଚନା : ହଁ ଯେ, ତୁମେ ଏମିତି ଥରକୁଥର ଚୌକି ଉପରୁ ଖଟ ଉପରୁ କାହିଁକି ତଳକୁ ପଡ଼ଯାଉଚ କହୁଚ ?

ଚନ୍ଦ୍ରମଣି : ଶନି ପରା ମତେ ଉପରୁ ତଳକୁ ଝିଙ୍କୁଚି, ମୋର ଆଉ ଦୋଷ କ'ଣ ?

ସୁଲୋଚନା : ଏଥିରେ ପୁଣି କହୁଚ କ'ଣ ନା ତମେ ଭୁବନେଶ୍ୱର ଯିବ ! ଯିବ ଯଦି ଚାଲ ମୁଁ ତମ ସାଙ୍ଗରେ ଯିବି···ହେ ପ୍ରଭୁ ଲିଙ୍ଗରାଜ !

ଚନ୍ଦ୍ରମଣି : ତେମେ ଯାହା କହୁଚ ଅବଶ୍ୟ ଠିକ୍ । ଏମିତ ଶୂନ୍ୟେ ଶୂନ୍ୟେ ଚୌକି ଉପରୁ ଖଟ ଉପରୁ ଚଳେ କଗୁଡ଼ି ହେଇ ପଡ଼ି ମତେ ବ ଡର ଲଗିଲଣି । ସେଇଥିପାଇଁ ମୁଁ ଘରଛାଡ଼ି କୁଆଡ଼େ ଯିବ ନାହିଁ—ଏଇଠି ଧାରଣାରେ ପଡ଼ିବ ।

ସୁଲୋଚନା : ଏଇଠି ଆମ ଘରେ ?

ଚନ୍ଦ୍ରମଣି : ହଁ ।

ସୁଲୋଚନା : ଛିଏତ ଅତି ଭଲ କଥା !···ହେ ପ୍ରଭୁ ଅମରେଶ୍ୱର !··· ହଁ କହୁବଟି, କେମିତ କ ରକମ ଧାରଣା ?

ଚନ୍ଦ୍ରମଣି : କହୁଚ ଶୁଣ—ତମେ ମନେ ମନେ ହେଜ କରି ରଖ ।

ସୁଲୋଚନା : ରଖିଲ, ତୁମେ କୁହ ।

ଚନ୍ଦ୍ରମଣି : ଶୁଣ ଏକରେ ଏଇ ପାଟିକଥା ଘରେ, ଏଇ ଯୋଉ ଘରେ ଆମେ ବସିଚୁ···

ସୁଲୋଚନା : ହଁ ।

ଚନ୍ଦ୍ରମଣି : ଏଇ ଘରେ ତଳେ—ମାନେ ପଲଙ୍କରେ ନୁହେଁ, ତଳେ ଭୂଇଁରେ, ଗୋଡ଼ଠୁ ମୁଣ୍ଡଯାଏ ଗୋଟାଏ କମ୍ବଳ ଘୋଡ଼େଇ ହେଇ ଶୋଇ ମନେ ମନେ ମହାଦେବଙ୍କୁ ସ୍ମରଣ କରିବ ।

ସୁଲୋଚନା : ହେ ପ୍ରଭୁ ଧବଳେଶ୍ୱର—ହେ ଲିଙ୍ଗରାଜ ମହାପ୍ରଭୁ !

ଚନ୍ଦ୍ରମଣି : ଦୁଇରେ, ଏଇ ଯୋଉଠି ଧାରଣାଦେବ, ଏଠି ସ୍ତ୍ରୀଲୋକର ଛାଇ ସୁଦ୍ଧା ପଡ଼ିବନ ।

ସୁଲୋଚନା : ନା ପଡ଼ିବ ନାହିଁ ।

ଚନ୍ଦ୍ରମଣି : ତିନ୍‌ରେ, ମହାଦେବଙ୍କ ନାରେ ମାନସିକ କରି ମୁଣ୍ଡତଳେ ଗୋଟିଏ ଅଳଭଙ୍ଗି ଟଙ୍କା ରଖିବ ।

ସୁଲୋଚନା : କେତେ ଟଙ୍କା ?

ଚନ୍ଦ୍ରମଣି : ଘରର ଘରଣୀ ତୁମେ, ତୁମେ ଯାହା ବନ୍ଦୋବସ୍ତ କରିବ ।

ସୁଲୋଚନା : (ଯଙ୍ଗେ ସଙ୍ଗେ) ଦୁଇଶ' ଅଢ଼େଇଶ' ହେଲେ ଚଳିବ ?

ଚନ୍ଦ୍ରମଣି : ଚଳିବ ।

ସୁଲୋଚନା : (ଦୃଢ଼ତାର ସହ) ଥଳିରେ ଦୁଇଶ' ଏକାବନ୍ ଟଙ୍କା ରହିବ ।

ଚନ୍ଦ୍ରମଣି : ଭଲ । ଶୁଣରେ ଏବେଠୁ ନିର୍ଜଳା ଉପବାସ ରହି ସନ୍ତ ସାତ ପ୍ରହର, ମାନେ ଏଗାରଟା ବାରଟା ଯାଏ କମ୍ବଳ ଘୋଡ଼େଇ ହୋଇ ଏକଲୟରେ ଧାରଣାରେ ପଡ଼ିବ ।

ସୁଲୋଚନା : (ସବୁକଥା ସମ୍ପୂର୍ଣ୍ଣ ବିଶ୍ୱାସ କରି) ନିର୍ଜଳା ଉପବାସ ! (କାନ୍ଦି) ଏତେ କଷ୍ଟ ସହିପାରିବ ?

ଚନ୍ଦ୍ରମଣି : ଆହା କାନ୍ଦନି ତୁମେ । ଇଏ ସବୁ ଦେବକର୍ମ—ପୁଣ୍ୟକର୍ମ ।

ସୁଲୋଚନା : ହଉ, ସେଇ ଠାକୁରେ ଭରସା (ଡାକିଲେ) ଆରେ ମକର, ସେ ଘରୁ ଗୋଟାଏ ଭଲ ଦେଖି କମ୍ବଳ ଆଣିଲୁ । (ବାବୁଙ୍କୁ) ଦେଖନ୍ତୁ, ଧାରଣାବେଳେ ସିନା ସଙ୍କୁଡ଼ି ହବନାହିଁ, ଧାରଣା ଆଗରୁ···ଟିକିଏ କ'ଣ ପାଟିରେ ଦେଲେ···

ଚନ୍ଦ୍ରମଣି : (ବାଧାଦେଇ) ନାହିଁ ନାହିଁ, ଧାରଣା କଥାଟା ଯେତେବେଳେ ତୁଣ୍ଡରେ ଧରିଲଣି, ସେ ତୁଣ୍ଡ ଆଉ ସଙ୍କୁଡ଼ି ହବା ଉଚିତ ନୁହେଁ ।

ସୁଲୋଚନା : (ସନ୍ତୁଷ୍ଟ ହୋଇ) ହଉ ହଉ, ହେଲା । ଠାକୁରେ କରନ୍ତୁ, ଏଇ କଷ୍ଟ ତମର ସବୁଦିନେ ରହୁ । (ମକର କମ୍ବଳ ନେଇ ଆସିଲା) ମକର, ଗୁଞ୍ଜୁଣୀ ମୂଠାରେ ଏ ଘରକୁ ଭଲ କରି ଓଳାଇ ସେ ହରିଣଛାଲ ପଟିଟାକୁ ଆଣି ପକା । ହଁ,

ପୂଝାରୀଙ୍କୁ କହିଦେ, ଏ ବେଳା ବାବୁ ଆଉ ମୁଁ କେହି ଖାଇବୁନି, ସେ ଚମରୁମାନଙ୍କ ବଗିଚାରେ ସେବେଇ କରିବ (ବାବୁଙ୍କ) ହେଉଛି, ମୁଁ ଟଙ୍କା ଆଣି ଆସୁଚି ।

[ଚାଲିଗଲେ । ମକରା ତା' କାମ କରୁଥାଏ । ବାବୁ କିଛି ନ ଜାଣିଲା ପରି ଚୌକି ଉପରେ ଜାକିଜୁକି ହୋଇ ମୁହଁ ପୋତି ବସିଥା'ନ୍ତି । ଟଙ୍କା ଥଳି ଧରି ସା'ନ୍ତାଣୀ ଆସିଲେ]

ସୁଲୋଚନା : ଘର ଝାଡ଼ିଲୁ ମକରା ?…ହଁ, ସେ ହରିଣଛାଲ ପଟିଟାକୁ ଆଣି ଏଠି ପକା ।

[ ପଟି ପକେଇ ମକରା ଏକାନ୍ତରେ ଏପାଖକୁ ଆସି ସା'ନ୍ତାଣୀଙ୍କ ସହିତ କଥାବାର୍ତ୍ତା ହେଲା । ବାବୁ ସେମିତି ଚୌକି ଉପରେ ମୁହଁ ପୋତି ବସିଥା'ନ୍ତି ]

ମକରା : (ଉଦ୍‌ବେଗରେ) ମା ବାବୁ କ'ଣ…

ସୁଲୋଚନା : (ଦୁଃଖିତରେ ସ୍ୱର୍ଗ ପଡ଼ିଲା ପରି) ବାବୁଙ୍କ ଦେହ ଭଲ ନାହିଁ— ଘରି କଷ୍ଟ । ଏବେଠୁଁ ରାତି ଅଧଯାଏ କମ୍ବଳ ଘୋଡ଼େଇ ହୋଇ ଧାରଣାଦେଇ ଶୋଇବେ—ମୁଣ୍ଡ ତଳେ ଟଙ୍କା ଥଳି ରଖି ମନେ ମନେ ମହାଦେବଙ୍କୁ ଭଜିବେ—ନିର୍ଜଳା ଉପବାସ ରହିବେ !

ମକରା : ନିର୍ଜଳା ଉପବାସ !!

ସୁଲୋଚନା : ହଁରେ ମକରା, ଗ୍ରହ ଶାନ୍ତ ହବ—ଦେହ ଭଲ ହବ—ମତି-ଗତି ସବୁ ବଦଳିଯିବ ।

[ ଏଥିରେ ମକରାର ସବୁ କଥାରେ ହୃଦ୍‌ବୋଧ ହେଲା । ସେ ମନେ ମନେ ବାବୁଙ୍କ ମଙ୍ଗଳ କାମନା କରି ଠାକୁରଙ୍କ ଉଦ୍ଦେଶ୍ୟରେ ନୀରବ ପ୍ରଣତି ଜଣାଇଲା । ସେତେବେଳକୁ

ସା'ନ୍ତାଣୀ ଠାକୁରଙ୍କ ଉଦ୍ଦେଶ୍ୟରେ ଅଣ୍ଟୁ ପାଡ଼ ମଥା ଲଗେଇ ପ୍ରଣାମ କରୁଥା'ନ୍ତି ]

ସୁଲୋଚନା : (ଉଠି) ଶୁଣୁଚ, ଏ ଟଙ୍କାଥଳି ?

ଚନ୍ଦ୍ରମଣି : (ମୁହଁ ନ ଉଠାଇ) ସେଇଠି ତମର ହାତରେ ରଖିଦିଅ (ଜଣାଗଲା ବାବୁଙ୍କର ଟଙ୍କାପ୍ରତି ଅଟୌ ମୋହ ନାହିଁ । ସେ ନିର୍ଲିପ୍ତ । ସା'ନ୍ତାଣୀ ଥଳି ନେଇ ପଟି ଉପରେ ରଖିଲେ)

ସୁଲୋଚନା : ପୁଣ୍ୟ କାମ ବୋଲି ହରିଣଛାଲ ପଟି ଉପରେ ଶୋଇ ଧାରଣା ଦେବ । ହେଲେ ଖାଲି ପଟିଟା, ଦେହକୁ କାଟିବ— ତା' ଉପରେ ଖଣ୍ଡେ ଶେଯ କି ସତରଞ୍ଜି···

[ ବାବୁ ମୁହଁ ଉଠାଇ ହମିଲିତ ଚକ୍ଷୁରେ ସା'ନ୍ତାଣୀଙ୍କୁ ଚାହିଁଲେ । ତାଙ୍କର ଯେପରି ଭାବାନ୍ତର ହେଉଚି ]

ଚନ୍ଦ୍ରମଣି : ଭଗବାନ୍‌ଙ୍କ ନିକଟରେ ଏ ଅଧମଭକ୍ତ ଯେଉଁ ପରୀକ୍ଷା ଦବ, ସେଥିରେ ତମର ବାଧାଦେବା ଉଚିତ କି ?

[ ସା'ନ୍ତାଣୀ ତରଗଲେ । ତାଙ୍କ ଆଖିରେ ଲୁହ ]

ସୁଲୋଚନା : ନାଇଁ ନାଇଁ, ମୁଁ ବାଧାଦେଉନି ।···ମୁଁ ଖାଲି କହୁଥିଲି ତମକୁ କେତେ କଷ୍ଟ ନହବ ! (କାନ୍ଦୁଥା'ନ୍ତି)

ଚନ୍ଦ୍ରମଣି : ଘରର ଲକ୍ଷ୍ମୀ ତୁମେ, ସୁନାପ୍ରତିମା—କାନ୍ଦନାହିଁ । ଧାରଣା ବେଳ ହେଇଗଲା, ତୁମ କାମରେ ତୁମେ ଯାଅ - ହଁ ଶୁଣ, ମୁଁ ଏଠି ଧାରଣାରେ ପଡ଼ିଥିବାଯାଏ, ଏ ଘରବାଟେ କେହି ବାହାରକୁ ଯିବେ ନାହିଁ କି ବାହାରୁ କେହି ଏବାଟେ ଆସିବେ ନାହିଁ ।

ସୁଲୋଚନା : ହଁ ସେଇଆ ହବ ।

[ଲୁହ ପୋଛି ବିଦାୟ ନେଲେ । ଏ ଦୃଶ୍ୟ ଦେଖି ମକରର ମଧ୍ୟ ଭାବାନ୍ତର ସୃଷ୍ଟି ହେଲାଣି । ବାବୁ ପୁଣି ଚୌକି ଉପରେ ପୂର୍ବଭଳି ମୁହଁ ଗୁଞ୍ଜି ବସିଲେ]

ମକର : ପଡି ବସ୍ଥି ହେଲଣି ହଜୁର୍ ।

ଚନ୍ଦ୍ରମଣି : (ମୁହଁ ନ ଉଠାଇ ଅସ୍ପଷ୍ଟ ଗଳାରେ) ଶୁଅ ।

[ମକର ହୁଏତ କଛୁ ବୁଝିପାରିଲାନ । ସେ ବାବୁଙ୍କର ଅଦ୍ଭୁତ ହଳକଟକୁ ଯାଇ ନଇଁ ପଡ଼ି ହାତଯୋଡ଼ି ଜଣାଇଲା ]

ମକର : ଆପଣେ ପର ଏଠି ଶୋଇବେ ଆଜ୍ଞା ?

[ବାବୁ ଏଥର ଝାଡ଼ଝୁଡ଼ି ହୋଇ ସାଉଦର୍ପରେ ଉଠି ଠିଆହେଲେ । ସତେ ଯେମିତ ସେ ଗଡ଼ ଜୟ କରିଚନ୍ତି]

ଚନ୍ଦ୍ରମଣି : କ'ଣ କହିଲୁ ? ମୁଁ ଶୋଇବ ?

ମକର : ଆଜ୍ଞା !

ଚନ୍ଦ୍ରମଣି : ମୁଁ ଶୋଇବ ତ ତୁ କ'ଣ କରିବୁ (ମକର ସ୍ତମ୍ଭୀଭୂତ)

ମକର : ଆ···ଜ୍ଞା !

ଚନ୍ଦ୍ରମଣି : ଆ, ଏଠି ଏ କମ୍ବଳ ଘୋଡ଼େଇ ହେଇ ଶୁଅ ।

ମକର : ମୁଁ ଶୋଇବ ?

ଚନ୍ଦ୍ରମଣି : କହିଲ ପର ଶୁଅ । ମୁଁ ବାହାରକୁ ଯିବ ।

ମକର : ମୁଁ କାଇଁକ ଶୋଇବ ଆଜ୍ଞା ? ଆପଣେ ପିନା ମୁଣ୍ଡତଳେ ଟଙ୍କାଥଳି ରଖି ଠାକୁରଙ୍କୁ ଭଜ ଧାରଣା ଦେବେ···

ଚନ୍ଦ୍ରମଣି : ଟଙ୍କା ଥଳି ମୁଣ୍ଡତଳେ ନୁହେଁ, ମୋ ପକେଟରେ ରହିବ (ଟଙ୍କା ଥଳି ଉଠେଇ ନେଲେ) ତୁ ସେ ଖଜୁର ଝାଡ଼ୁଟା ମୁଣ୍ଡ ତଳେ ରଖି ଶୁଅ ।

ମକର : ମୋ ମୁଣ୍ଡରେ କଛୁ ପଶୁନାହିଁ ହଜୁର୍ !

ଚନ୍ଦ୍ରମଣି : ଆରେ ବୋକା, ତୁ ତାକ୍ରୁରୁ ଚଳପାପାଏ କମଳ ଘୋଡ଼େଇ ହେଇ ଶୋଇଲେ, ମା' ଜାଣିବେ ମୁଁ ଶୋଇଚ । ବାସ୍, ତେଣିକି ମୁଁ ମୋ କାଟରେ ଯିବ ।

ମକର : ଆଜ୍ଞା···ଆଜ୍ଞା, ମା' ଯେତେବେଳେ ଜାଣିବେ ଏଠି ଅଟଣେ ଶୋଇନାହାଁନ୍ତ, ମୁଁ ଶୋଇଛ—ସେତେବେଳେ ?

ଚନ୍ଦ୍ରମଣି : (ବିରକ୍ତ ହେଇ) କ'ଣ କହୁଚୁ ବେ ?

ମକର : ମୋ ପିଠିରୁ ଛାଲ ଉତ୍ତୁରିଯିବ ଆଜ୍ଞା !

ଚନ୍ଦ୍ରମଣି : ତୁ ମୋ' ସାଙ୍ଗରେ ଖେଳୁଚୁ କରେ ମକର ? ଜାଣିଚୁ, ପିଟିପିଟି ତୋ ହାଡ଼ ଗୁଣ୍ଡା କରିଦେବି— ହାଜ ବଦମାସ୍ ।

ମକର : (କାନ୍ଦ) ଆପଣ ପିଟି ପିଟି ହାଡ଼ ଗୁଣ୍ଡା କରିଦେବେ—ମା ଘୁଞ୍ଚୁଣୀରେ ପିଟି ଛାଲ ଉଚାରିଦେବେ । ମୁଁ ମରିଯିବି ଲେ ବୋଉ ! ମୋର ଏ' କ ଦଶାହେଲା ?

ଚନ୍ଦ୍ରମଣି : (ନରମିଯାଇ କଚୁକ୍ଷଣ ଭୁନ ପଡ଼ିଲେ) ଅରେ ମକରୁ ! ··· (ମକର କାନ୍ଦ କାନ୍ଦ) ଶୁଣ୍, ତୁ କାନ୍ଦେ ନାଇଁ ଶୁଣ । ତୁ କେନ୍ଦ୍ରାପଡ଼ା ତୋ ମାମୁ ଘରକୁ ଯିବୁ କହୁଥିଲୁ ଟେ ?

ମକର : ହଇ ।

ଚନ୍ଦ୍ରମଣି : କାଇଁ ଗଲୁନାଇଁ ଚ ?

ମକର : ମା' ସା'ନ୍ତାଣୀ ଛୁଟି ଦେଲେନ ।

ଚନ୍ଦ୍ରମଣି : ସେ କଏ ? କାଲଠୁ ମୁଁ ତତେ ସ୍ପେଶାଲ ଛୁଟି ଦେଲି । ନେ' ଏ ସ୍ପେଶାଲ—ବାଟଖର୍ଚ୍ଚ କରି ଯିବୁ । (ଟଙ୍କା ଦେଲେ) ଆଉ କ'ଣ ?

ମକର : ତେବେ ଭଲ ଜାମା କ ପଟେଇ ନାହିଁ ।

ଚନ୍ଦ୍ରମଣି : କୁଛ୍ ପରୱା ନେଇଁ । କାଲ ତତେ ସବୁ କହିଦେବ, ବୁଝିଲୁ ?

ମକର : (ଖୁସିରେ) ଆଜ୍ଞା ।

ଚନ୍ଦ୍ରମଣି : ଆ, ଏଠି ମୁଣ୍ଡରୁ ପାଦ ଯାଏ ଏ କମଳ ଘୋଡ଼େଇ ହେଇ ଶୁଅ । ମୁଁ ରାତିରେ ଆସିବାଯାଏ ଏମିତ ଶୋଇଥିବୁ । କାଶିବୁ ନାହିଁ କି ଛିଙ୍କିବୁ ନାହିଁ । ଶୋଇପଡ଼ିଲେ ଘୁଙ୍ଗୁଡ଼ି ମାଡ଼ିବୁ ନାହିଁ । ବୁଝିଲୁ ?

ମକର : ଆଜ୍ଞା । (ମକର ଶୋଇଲା)

ଚନ୍ଦ୍ରମଣି : ବେଶ୍, ତୁ ଶୁଅ, ବେଶ୍ ଆରାମ୍‌ରେ ଶୁଅ—ମୁଁ ଚାଲିଲି ।

[ଟଙ୍କାଥଳି ନେଇ ବାହାରିଗଲେ]

[ଉସ୍‌ମାନ୍ ଡାକ୍ତର କକ୍ଷ । ଚନ୍ଦ୍ରମଣି ଓ ଉସ୍‌ମାନ୍ ହସ-ଖୁସିରେ ନିମଗ୍ନ । ବାବୁଙ୍କର ମଦ୍ୟପାନ ଚାଲିଛି]

ଉସ୍‌ମାନ୍ : ନା-ନା, ମୁଁ ତମର କିଛି କଥା ଶୁଣିବି ନାହିଁ । ଏତେ-ଦିନେକେ ମୁଁ ତମକୁ ପାଇଛି । ତମେ କହୁଛ କଣ ନା ରାତି ନଅଟା ଦଶଟା ଘରେ ଚାଲିଯିବ ?

ଚନ୍ଦ୍ରମଣି : ଶୁଣ ଉସ୍‌ମାନ୍, ସେ ସା'ନ୍ତାଣୀଟା ପାଖରେ ଏଇଟା ମୋର ଗୋଟାଏ ବାହାନା । ରାତି ନଅଟା ଦଶଟାରେ ମୁଁ ଫେରିଯିବା କଥା । ନ ହେଲା ରାତି ଏଗାରଟା ବାରଟା ହେଇଯିବ । ଏଥିରେ କ'ଣ ମୋର ମୁଣ୍ଡ କଟିଯିବ !

ଉସ୍‌ମାନ୍ : ତା' ହେଲେ ଜମିଦାର ସାହେବ ଏବେଠୁ ରାତି ବାରଟା ଯାଏ ଆମେ ଏ ଘର ଛାଡ଼ି ଚାଲ ବାହାରେ କୋଉଠି ମଜଲିସ୍ କରିବା ।

ଚନ୍ଦ୍ରମଣି : ସତ । ମ.ଷ ଏ ବାହାରଟା କୁଆଡ଼େ ? କୋଉଠିକ ଆମେ ଯିବା ?

ଉସ୍‌ମାନ୍ : ଯୁଆଡ଼େ ଆମର ଇଚ୍ଛା । ମୋର ତ ମନେହଉଚ ଆମେ ଏମିତ ଉଡ଼-ଉଡ଼ ଉଡ଼-ଉଡ଼ ଯାଇ ପଶ୍ଚ ସାଇଜରେ ମିଶିଯିବା ।

[ଦୁହେଁ ଆଲିଙ୍ଗନବଦ୍ଧ ହୋଇ ହସି ଉଠିଲେ । କଣ୍ଠରେ ଏହା ଏକ ଆନନ୍ଦ ଉଲ୍ଲାସମୟ ପରିବେଶ । ଏହି ପରିବେଶ ସହିତ ସମତାଳ ରକ୍ଷା କରି ଯନ୍ତ୍ରସଙ୍ଗୀତ ଗୁଞ୍ଜରି ଉଠିଲା ଓ କିଛି ସମୟ ପରେ ବନ୍ଦ ହୋଇଗଲା]

[ଚନ୍ଦ୍ରମଣି ବାବୁଙ୍କ ସେଇ ଘର । ସନ୍ଧ୍ୟା ଉତ୍ତୀର୍ଣ୍ଣ ହେଇ-ଗଲାଣି । ହାତରେ ଗୋଟିଏ ଜ୍ୱଳନ୍ତ ପ୍ରଦୀପ ଧରି ସା'ନ୍ତାଣୀ ଘର ଭିତରକୁ ଆସିଲେ— ବୁଝିପାରିଲେ ବାବୁ ଧାଉଁଶାଡେଇ ଶୋଇଚନ୍ତି]

ସୁଲୋଚନା : (ମନକୁ ମନ) ଆହା ! ଏକ ମନ ଏକ ଧ୍ୟାନରେ ଧାରଣା ଦେଇ ପଡ଼ିଚନ୍ତି ! କି କଷ୍ଟ ଭୋଗିଲେଣି—ସକାଳୁ ଆସି ସଞ୍ଜ ହେଲାଣି, ପାଣି ଟୋପେ ବି ପେଟକୁ ଯାଇନି (ଲୁହ ପୋଛିଲେ) କହୁଥିଲେ ସ୍ତ୍ରୀ ଲୋକର ଛୁଇ ପଡ଼ିବ ନାହିଁ । ସଞ୍ଜ ତ ହେଲାଣି, ଛୁଇ କାହୁଁ ଆସିବ ?···ମୁଁ ତାଙ୍କ ପାଖକୁ ଯାଏଁ । (ପ୍ରଦୀପଟି ଯଥା ସ୍ଥାନରେ ରଖି ଧାରଣା ସ୍ଥାନକୁ ଆଗେଇଗଲା ବେଳକୁ ମକର ମୁଣ୍ଡକୁ ଝୁଣ୍ଟିଲେ) ମୁଁ ଅଲକ୍ଷଣୀ କ'ଣ କଲିଟି ? ତାଙ୍କ ମୁଣ୍ଡକୁ ଝୁଣ୍ଟିଲି ! (ପାଦ ପାଖରେ ବସିପଡ଼ି ମକରର ଦ' ପାଦକୁ ଧରିଲେ )

ମକର : (କମ୍ବଳ ଭିତରୁ) ଉଁ-ଉଁ-ଉଁ ! (ପାଦ ଟାଣିନେଉଥାଏ)

ସୁଲୋଚନା : ନାଇଁ ନାଇଁ, ପାଦ ଟାଣି ନିଅ ନାହିଁ । ମୁଁ ତମ ମୁଣ୍ଡକୁ ଝୁଣ୍ଟି ପକେଇଲି, ମୋର ପାପ ହେଇଚି । ତମ ପାଦ ଧରି ମୁଣ୍ଡିଆ ମାରୁଚି ମତେ କ୍ଷମା କର । (କମ୍ବଳ ତଳେ ହାତ ପୂରାଇ ପାଦଧରି ମୁଣ୍ଡିଆ ମାରଲେ । ମକରର ପାଦକୁ ଧରି) ଆହା ନେଉଳ ଉପାସରେ ପଡ଼ି ଏଡ଼େ ସୁନ୍ଦର ସାଁଉଳିଆ ଚାନ୍ଦ କୁଆଡ଼େ ସିମିଟି ସାମିଟି ଗଲଣି ! ଖାଲି ଗୋଡ଼ଗୋଡ଼ ଶିରା··· ଦେହ ସାରା ପୁଣି ଝାଳରେ ଜୁଡ଼ୁବୁଡ଼ୁ । ଝାଳ ଗୁଡ଼ାକ ପୋଛିଦିଏଁ । (ପଣତ କାନିରେ ଝାଳ ପୋଛିଲେ । ମକର ଚମକି ଉଠୁଥାଏ)

ମକର : (କମ୍ବଳ ଭିତରୁ) ଉଁ-ଉଁ-ଉଁ !

ସୁଲୋଚନା : ନାଇଁ ନାଇଁ, ମୁଁ କମ୍ବଳ କାଢ଼ୁନାହିଁ । ତେମେ ଥିରି ହେଇ ଧାରଣା ଦେଇ ଶୁଅ । ମୁଁ ଏମିତି କମ୍ବଳ ତଳେ ହାତ ପୂରାଇ ମୋ ପଣତରେ ଝାଳ ପୋଛିଦଉଚି । (ପୋଛୁ ପୋଛୁ ଚମକି) ଏଁ ! ଏ ଦେହ ଆସି କ'ଣ ହେଲଣି ? ପେଟ ଟୁମୁକା–ପଞ୍ଜରହାଡ଼ ଗଣି ହେଇଯାଉଚି—ଗାଲ ପାଟି ଟାକୁଆ ହେଇଗଲଣି !···ହେ ବିଧାତା, ଭଲ ମଣିଷଟା ! ଧାରଣାରେ ଶୋଇ ଏମିତି ହେଇଗଲେ କାହା ଦେହ ଭଲ ସମ୍ଭବ ! (ଲୁହ ପୋଛିଲେ । ପୁଣି ସମରେ କମଳ ତଳେ ହାତ ପୂରାଇ କହିଚାଲିଥା'ନ୍ତି) ହେଇତ, ଶୁଣୁଚ ? ଗୋଟାଏ ଦିନରେ କାର୍ତ୍ତିକ ଚମର ଏମିତି ହେଲା କହିବଟି ?··· ପଶମ ପରିକା କେଉଁ କେଉଁ ମୁଣ୍ଡବାଳ ହାତକୁ ଟାଆଁସା ଲାଗୁଚି—ଖଣ୍ଡାଧାର ପରି ନାକ କୁଆଡ଼େ ଚେପେଟା ହେଇଗଲଣି !···ଏଁ···ଏଁ ! ଇଏ କ'ଣ ହେଲା ! ନାକ ତଳେ ନିଶ କାହିଁ ? ନିଶ ତ ନାହିଁ—ନିଶ ଆଉ ଝଡ଼ିପଡ଼ିଲା କି ? ହେ ଭଗବାନ୍, ଧାରଣାରେ ପଡ଼ିଲେ

ଏମିତ କ'ଣ ସବୁ ବଦଳିଯାଏ ! କଳା ମୁଚୁମୁଚୁ ସାଆନ୍ତଆ ନିଶ କୁଆଡ଼େ ଉଭେଇଗଲା ?

(କାନ୍ଦି ଉଠିଲେ)

ମକର : ନାଇଁ ମା' କାନ୍ଦନାହିଁ, ବାବୁଙ୍କ ନିଶ ତାଙ୍କ ମୁହଁରେ— ଏଇଟା ମୋ ମୁହଁ ।

ସୁଲୋଚନା : (କମ୍ବଳ ଫୋପାଡ଼ି ଦେଇ) ହଇରେ ମକର--ହଇରେ ଅଳପେଇସା ! ତୁ ଏଠି କମଳ ଘୋଡ଼େଇ ହେଇ ପଡ଼ିଚୁ, ଆଜି ମୁଁ ତୋ ପାଦ ଧରି ତିନିଥର ମୁଣ୍ଡିଆ ମାରିଲିଣି ! କୁଆଡ଼େ ଗଲା ଗୁଞ୍ଜୁଣୀମୁଠା ?

ମକର : ମତେ ମାର ନାହିଁ ମା', ମୁଁ ହୁକୁମର ଚାକର । ମତେ ମାଇଲେ ଏ ସାଇଲୋକ ଜାଣିବେ । ଏ ସାଇ ଲୋକେ ଜାଣିଲେ ଆର ସାଇଲୋକେ ଜାଣିବେ । ଏମିତି ସାଇକି ସାଇ—ସାଇକି ସାଇ ସମସ୍ତେ ଜାଣିବେ । ନାଜ କାହାକୁ ହବ କହିଲ ମା' ?

ସୁଲୋଚନା : ତୋ ବାବୁ କୁଆଡ଼େ ଯାଇଚି ?

ମକର : ତାଙ୍କ କାମରେ ।

ସୁଲୋଚନା : ହଉ ତୁ ତୋ କାମରେ ଯା' ।

ମକର : ମୋ କାମ ତ ଏଇଠି ମା ସା'ନ୍ତାଣୀ—ବାବୁଙ୍କ ଆସିବାଯାଏ ଏଇଠି କମଳ ଘୋଡ଼େଇ ହୋଇ ଶୋଇବ । (ସବୁ ଅବସ୍ଥା ବୁଝିପାରିଲେ ସା'ନ୍ତାଣୀ)

ସୁଲୋଚନା : (ନରମ ଗଳାରେ) ଆରେ ମକରୁ !

ମକର : (କୃତକୃତ୍ୟ) ମା' ସା'ନ୍ତାଣୀ ।

ସୁଲୋଚନା : ତୁ ପଞ୍ଝାମୁଣ୍ଡେଇ ତୋ ଶ୍ୱଶୁର ଘରକୁ ଯିବାପାଇଁ କହୁଥିଲୁ ପରା ?

ମକର : (ସେ ମଧ୍ୟ ସବୁ ଅବସ୍ଥା ବୁଝିପାରି) ଯିବ ଯେ, ହେଲେ ବାଟଖର୍ଚ୍ଚ କାହିଁ, ଛୁଟି କାହିଁ, ଅଙ୍ଗା କାଇଁ ନା ପଥା କାଇଁ ?

ସୁଲୋଚନା : (ଟଙ୍କା ଦେଇ) ଏଇ ନେ ବୁଢ଼ିଟଙ୍କା ବାଟଖର୍ଚ୍ଚ କରିବୁ । କାଲଠୁ ତୋର ଘୁରିବନ ଛୁଟି । କାଲି ଲୁଗାପଟା ସବୁ କଣିଦେବ । ଏବେ ଯା, ସେ ଦାଣ୍ଡପଟ ଗୁହାଳ ଘରେ ଲୁଚି କରି ଶୋଇବୁ ।

ମକର : (ଯାଉ ଯାଉ ଫେରି) ଏଠି ପୁଣି କିଏ ଶୋଇବ ମା ?

ସୁଲୋଚନା : ମୁଁ—କମଳ ଘୋଡ଼େଇ ହେଇ ମୁଁ ଶୋଇବ ।

ମକର : ତେବେ ତ ସବୁ ଅଡୁଆ ଛୁଟିଗଲା । ବାବୁ ଶୋଇଥା'ନ୍ତେ, ନହେଲା ମା' ଶୋଇବେ ।

[ଆହୁରି ଖୁସି ମନରେ ମକର ଘରୁ ବାହାରିଗଲା । ସା'ନ୍ତାଣୀ କମଳ ଘୋଡ଼େଇ ହେଇ ଶୋଇ ରହିଲେ ।...ସମସ୍ତ ଅନ୍ଧକାରାବୃତ ହେଇଯାଉଚି । ପ୍ରାୟ ମଧ୍ୟରାତ୍ରି ବେଳକୁ ମାତାଲ୍ ଅବସ୍ଥାରେ ବାବୁ ଘର ଭିତରକୁ ଆସିଲେ । ତାଙ୍କ ଆଖି ଜ୍ୱଳନ୍ତ ପ୍ରଦୀପ ଉପରେ ପଡ଼ିଲା । କିଛିକ୍ଷଣ ସେ ମିଟି ମିଟି କରି ପ୍ରଦୀପ ଆଡ଼େ ଗ୍ୱହିଁଲେ]

ଚନ୍ଦ୍ରମଣି : ବାଃ ବାଃ ! ଧାରଣା ଘରେ ସନ୍ଧ୍ୟା ଦୀପ ! ଭଲ, ଖୁବ୍ ଭଲ ।...ଆରେ ମକ୍ରୁ—ବାବୁ ମକୁରୁ—ଭାଇ ମକୁରୁ ! ତୁ ମତେ ଆଜ ବଞ୍ଚେଇ ଦେଲୁରେ ମକ୍ରୁ । ଉଠ୍ ବାବା ଉଠ୍—ଆଉ କ ବର ମାଗୁଚୁ ମାଗ୍ । ମାମୁଘରକୁ ଯିବୁ କହୁଥିଲୁ ନା ? ଏବେ ଶ୍ୱଶୁର ଘରକୁ ଯା' ।...ମୁଁ ତ ମୋ ଶ୍ୱଶୁରଘରୁ ବୁଲି ଆସିଲି—ତୁ ଏବେ ତୋ ଶ୍ୱଶୁର ଘରକୁ ଯା' ।

ସୁଲୋଚନା : (କମ୍ବଳ ଭିତରୁ ଚୂପା କଣ୍ଠରେ) ହୁଁ !

ଚନ୍ଦ୍ରମଣି : କ'ରେ ! ଏମିତ ଚୂପ୍‌ସେ ହୁଁ ମାରୁଚୁ ? ନିଦ ଘୁଙ୍ଗୁନ—ଶୋଇବାକୁ ଆରମ୍ ଲଗୁଚ ? ହଉ ହଉ ଶୋଇଥା··· ବୁଝିଲୁ, ଚୋ ସା'ନ୍ତାଣୀ !···ସା'ନ୍ତାଣୀ କଏ କେ ! ଗୋଟାଏ ଡାଆଣୀ ସିଏ—ଡାଆଣୀ । ଢ' ଢ' ମାସ ହେଲା ମତେ ଘରେ ବାନ୍ଧ ରଖିଥିଲା । ଏ ଢ' ମାସ ମୋ ପାଟିରେ ଟିକେ ନିଶାପାଣି ବାଜନ । ପାଟି ଏକ୍‌ଦମ୍ ପଡ଼ିଯାଇଥିଲା । ଗନ୍ଧ ! ଆଃ ମୋ ପାଟିରୁ ଆଜ ଅରୁଚ ଘୁଞ୍ଚିଗଲା (ବାବୁଙ୍କର ଏଇ ସବୁ କଥା ଚାଲିଥିବାବେଳେ ସା'ନ୍ତାଣୀ ମଝିରେ ମଝିରେ ବାବୁଙ୍କ ଅଲକ୍ଷ୍ୟରେ କମ୍ବଳ ଟେକ ପରିସ୍ଥିତ ଲକ୍ଷ୍ୟ କରୁଥା'ନ୍ତ । ବାବୁଙ୍କ କଥା ଚାଲିଚ) କି ବଢ଼ିଆ ମାଲ୍ ! ମଦ ନୁହେଁ ତ ଅମୃତ । ମହୁଲ ସାଥିରେ ଚାଉଳ ମିଶାଇ ଯେମିତ ଖାଣ୍ଟି ବଟେଇଚ୍ଚି ଫେଣ୍ଟି ଦେଇଚ, ପାଟି ପାଖକୁ ଗ୍ଲାସ ଉଠେଇଲା ବେଳକୁ ସେଥିରୁ ଖାଲି ଚୁଙ୍ଗ୍‌ଟାଙ୍ଗ୍, ଚୁଙ୍ଗ୍‌ଟାଙ୍ଗ୍ ଜଳତରଙ୍ଗର ସ୍ବର ବାଜ ଉଠିଲା । ସାଙ୍ଗେ ସାଙ୍ଗେ ଢ' ଗ୍ଲାସ ଟାଣିଦେଲି । (ଟିକଏ ରହି) ଆରେ ହେ ମକରା, ତୋ ଆଗରେ ମୁଁ ଏତେକଥା ଗପିଯାଉଚ, ତୋ ସା'ନ୍ତାଣୀ ଏଠି କୋଉଠି ଶୁଣୁନାହିଁ ତ···ଆବେ ଶୁଣିଲେ ଶୁଣୁ । ସେଇଟା ମୋର କ'ଣ କରିବ ! ଦେଖିଲୁ ତ, ତୋ ସା'ନ୍ତାଣୀକି କେମିତି ନାକ କାଟି ନାକ ହାତରେ ଦେଇ ଖସିଗଲି । ତାର ହିମ୍ମତ ଅଛି ତ ମୋ ସାମ୍‌ନାକୁ ଆସୁ—ଆଜ ଏଇଠି ହାତାହାତି ହେଇଯାଉ ! ମୁଁ ତାକୁ ଡରିଚ !! କଉ ନେହିଁ । ସେଇଟା ମଣିଷ ନୁହେଁ, ଗୋଟାଏ କାଠ କଣ୍ଢେଇ ।···ନା ପୁଣି କ'ଣ ନା—ସୁନ୍ଦୋ···ଚନା !! ଚନା ନା ଚୁନା—ବରିଚୁନା—କୋଳଥ ଚୁନା ! ଛିଃ ! ଆଉ, ତା' ନାଁ ? ଉସ୍‌ମାନ୍ ଭାବ ! ଢନରେ ଭାବ—ରାତିରେ ଭାବ ! ସଞ୍ଜୁଆ ଭାବ—ପାହାନ୍ତ ଭାବ ! ସିଏ ଜାଣି ମୋର ପ୍ରୀତି ପାରାୱାଡ଼ ପାରି ! (କମ୍ବଳ ଭିତରୁ ସା'ନ୍ତାଣୀ ଟିକଏ ହସ୍‌ଖୁସ୍ ହେଲେ ) କ'ଣରେ ମକୁରୁ ? କମ୍ବଳ ଭିତରେ

ତମ୍‌ଖୁସ୍ ହଉଚ୍ଚ ? କ'ଣ କଦ ଭାଙ୍ଗିଗଲ ? ହଉ, ଶୁଣ୍ ତା' ହେଲେ । ତମ୍‌ମାନ୍ ସାଙ୍ଗରେ ଯେମନ୍ତ ଆଜ ଭେଟ ହେଇଗଲ, ଖୁସିରେ ସେ କାନ୍ଧ ପକେଇଲ ।···ଆଉ ମତେ ଖାଇବାକୁ କ'ଣ ଦେଲ ଜାଣୁ ?···ତୋ ସା'ନ୍ତାଣୀ ହଏ ସରୁଚକୁଳ, ଛୁଞ୍ଚିପତର, ଅଥାର ମଣ୍ଡା । ଛୁଃ, ଥୁଃ ! ଏଗୁଡ଼ାକ ଘୋଡ଼ା ଖାଦ୍ୟ । ଆଉ ସିଏ ଦେଲ—କମା ଚପ୍ କଟ୍‌ଲେଟ, ସିଝା ଅଣ୍ଡା, ମଟନ୍ ଚପ୍ । ଆଉ ମାଲ୍ ସାଙ୍ଗକୁ ଗୁଟ କ'ଣ ଦେଲ ଜାଣୁ ? ଶୁଖୁଆ ପୋଡ଼ା । ଇସ୍ ! ପେଟେ ଠୁଙ୍କି ଦେଇଚ ।—ଶୁଣ , ଆଜ ତ ଗଲ—କାଲିଫିବ— ରୋଜ ଯିବ । ଆଜ ଧାରଣା ନାଁରେ ଟଙ୍କା ନେଲ—କାଲ ପାରଣା ନାଁରେ ଟଙ୍କା ନୁହେଁ ସୁନା ମୋହର ନେଇ-ଯିବ—ତା' ଗଳାରେ ମୋହର-ମାଳ ପିନ୍ଧେଇ ଦେବ···ତୁ କହିଲୁଟରେ ଘାଇ ମକ୍ରୁ, ସିଏ ମତେ ଯୋଉ ନଉଜ୍-ମଜ୍‌ଲିସ୍‌ରେ ରଖିଚ, ଏଠି ମତେ ସେ ମଉଜରେ କଏ ରଖିବ ? ଏଠି ମତେ ବଇଡମାଲ୍ ସାଙ୍ଗରେ ଶୁଖୁଆପୋଡ଼ା ଗୁଟ୍ କଏ ଖାଇବାକୁ ଦବ ? ତୋ ସା'ନ୍ତାଣୀ ତ ସା'ନ୍ତାଣୀ— ତା' ବୋପାଶଳା ଭଲ୍···

[କମ୍ବଳ ଫୋପାଡ଼ ଦେଇ ସା'ନ୍ତାଣୀ ଝଡ଼ପର ଉଠିଲେ]

ସୁଲୋଚନା : କ'ଣ ହେଲ ! ମୋ ବୋପା ଯୁା' ଶଳା ! (ଗୁଞ୍ଜୁଣୀ ମୁଠାରେ ପିଟିଲେ)

ଚନ୍ଦ୍ରମଣି : ଆରେ, ଆରେ, ଆରେ ! ମତେ ମାରୁଚ ? ଗୁଞ୍ଜୁଣୀ ମୁଠାରେ ପିଟି ପକଉଚ ?

ସୁଲୋଚନା : ମଦୁଆ—ପରଘର ପଶା ! (ଗୁଞ୍ଜୁଣୀ ମାଡ଼ ଗ୍ଭଲଥାଏ )

ଚନ୍ଦ୍ରମଣି : ଯାଇ ନାହିଁ— କୁଆଡ଼େ ଯାଇ ନାହିଁ—କାହାଘରେ ପଶି ନାହିଁ ।

ସୁଲୋଚନା : ମକଦ୍ଦମା ହେଲ ସାଇ, ମୋ ବାପ ହେଲ ଶଳା ! (ମାଡ଼ ଖୁଲିଚ)
ମୁଁ କୋଳଥ ଚୂନା ସିଏ ସଞ୍ଜୁଆ ଛାଗ !

ଚନ୍ଦ୍ରମଣି : ସେତିକି ଥାଉ (ମାଡ଼ ଖୁଲିଥାଏ) ଘର କାଟୁଚ—ଜାଣା ଘୁଞ୍ଚିଗଲାଣି । (ମାଡ଼ ତଥାପି ଖୁଲିଚ)

ସୁଲୋଚନା : ମୁଁ ମାଟି କଣ୍ଢେଇ, ସିଏ ଭସ୍ମମାନ୍ ଛାଗ—ସଞ୍ଜୁଆ ଛାଗ !
(ମାଡ଼ ଖାଇ ଖାଇ ବାବୁ ତଳେ ପଡ଼ିଗଲେ)

ଚନ୍ଦ୍ରମଣି : ଓ-ହୋ-ହୋ...

ସୁଲୋଚନା : ଶୁଖୁଆ ପୋଡ଼ା ଖାଇ ସାଙ୍ଗକୁ ଏ ଗ୍ରୁଞ୍ଜୁଣୀ ମୂଠା ଖାଇ କେମିତି ଲାଗୁଚି ?...ଆରେ ! ବାଘ ଘରେ ମିରିଗ ନାଚ । ମୋ'ଠୁ ଟଙ୍କା ଠକି ନେଇ, କୋଉଠି କାହା ଓଳି ତଳେ ପଡ଼ି...ମୋ ବାପ ପୁଣି ଯା' ଶଳା ! (ବାବୁ ତଳେ ପଡ଼ି ଆଖି ବୁଜି ଯନ୍ତ୍ରଣାରେ ଛଟପଟ ହେଉଥା'ନ୍ତି) ହିଁଃ ! ଢଙ୍ଗ ଦେଖ—ଛଟା ଗଲା ହଉଚି । ହେ...ଇ, ଇଏ ପୁଣି କ ପାଇଁ ବାହାରିଲ କି ? କ'ଣ, ପୁଣି କମଳ ଘୋଡ଼େଇ ହେଇ ଶୋଇବ ? ଉଠୁଚ, ନା ଆଉ ଦ' ପାହାର ଦେବି ?

[ ଏଥର ବାବୁ ଅଚେତ ଭଳି ତଳେ ପଡ଼ିଥା'ନ୍ତି ]

ସୁଲୋଚନା : ହଉ, ପଡ଼ିଥା ସେଇଠି ।

[ ସା'ନ୍ତାଣୀ ନଜେ ଘରୁ ବାହାରି ଯାଉଥିଲେ । କିନ୍ତୁ ଯାଇ ନ ପାରି କବାଟ ପାଖରେ ଅଟକିଗଲେ । ସେଇଠି ଥାଇ ମୁହଁ ଫେରାଇ ସ୍ୱାମୀଙ୍କୁ ଚାହିଁଲେ । ବାବୁ ସେମିତି ଅଚେତ ହେଇ ପଡ଼ିଚନ୍ତି । କିଛି ମୁହୂର୍ତ୍ତ ସା'ନ୍ତାଣୀ ସେଠି ନିର୍ବେଦ ହେଇ ରହିଲେ । ତା'ପରେ ସେ ବାବୁଙ୍କ ଅବସ୍ଥା ଦେଖି ସେମିତି ବିବ୍ରତ ହେଇ ଉଠିଲେ । ଧୀର ପଦରେ ବାବୁଙ୍କ ନିକଟକୁ ଯାଇ ସେଇଠି ବସିପଡ଼ିଲେ]

ସୁଲୋଚନା : ଉଠ । ଉଠୁଚ ନା ନାହିଁମ ? କ'ଣ ଏମନ୍ତ ଜଳନ୍ତାରେ ପଡ଼ି ରହିଥିବ ?···ଉଠ । (ଜୋର୍‌ରେ ହଲାଇଦେଲେ । ବାବୁ ପ୍ରକୃତରେ ଅଚେତ ହୋଇ ପଡ଼ିଥା'ନ୍ତି । ସା'ନ୍ତାଣୀ ଭାଙ୍ଗି-ପଡ଼ିଲେ—ବାବୁଙ୍କ ମଥା ନେଇ ତାଙ୍କ କୋଳରେ ରଖିଲେ ।) ଏଁ । ଇଏ କ'ଣ ହେଲା ? ଇଏ ତ ଚେତା ବୁଡ଼ିଗଲାଣି । (ସା'ନ୍ତାଣୀ କାନ୍ଦ ପକେଇଲେ)

ସୁଲୋଚନା : ହେ ଠାକୁରେ, କାହିଁକି ଭଲ ତାଙ୍କୁ ଏ ଦୁର୍ବୁଦ୍ଧି ଦଉଚ ? ବାଗ ମୁଣ୍ଡରେ ମୁଁ ଅଲକ୍ଷଣୀ କ'ଣ ନ କଲିଟି ? (କାନ୍ଦୁଥା'ନ୍ତି) ସ୍ୱାମୀ ଦେବତା ଯିଏ, ତାଙ୍କୁ ଘୁଞ୍ଚୁଣୀ ମୁଠାରେ ପିଟି-ପକେଇଲି । (ଡାକିଲେ) ଆରେ ମକର···ମକର··· (ମକର ଆସିଲା)

ମକର : ଇଏ କ'ଣ ମା' ? ଆପଣେ କାନ୍ଦୁଚନ୍ତି—ବାବୁ ଏମେତେ ପଡ଼ିଚନ୍ତି ।

ସୁଲୋଚନା : ତୁ ଆଗେ ଧରିଲୁ, ବାବୁଙ୍କୁ ସେ ଖଟ ଉପରକୁ ନବା (ଦୁହେଁ ଧରାଧରି କରି ନେଇ ପଲଙ୍କରେ ଶୁଆଇଲେ) ଶୁଣ୍ ମକର—( ଯେମିତି ଅନ୍ୟମନସ୍କ ହୋଇପଡ଼ୁଥା'ନ୍ତି )

ମକର : କ'ଣ ମା' ସା'ନ୍ତାଣୀ ?

ସୁଲୋଚନା : ଏଁ ? ହଁ, ସେ ଘର ଥାକରେ ଗୋଲାପଜଳ ଶିଶି ଅଛି ··

ମକର : ଅଛି ଆଜ୍ଞା, ମୁଁ ଦେଖିଚି ।

ସୁଲୋଚନା : ତୁ ଯା, ମାଠିଆରୁ ଥଣ୍ଡାପାଣି ବାହାର କରି ସେଥିରେ ଗୋଲାପଜଳ ଛିଞ୍ଚି ଆଣ ଯା'—ଚଞ୍ଚଳ !

ମକର : ଗଲି ମା' । (ମକର ବାହାରିଗଲା । ମଚ୍ଛିମା' ଆସିଲା)

ମଚ୍ଛିମା : ମା' ସା'ନ୍ତାଣୀ !

ସୁଲୋଚନା : ଏଁ ? କ'ଣ କହୁଚୁ ?

ମଲ୍ଲୀମା : କାଲି ସକାଳୁ ଆସି ଆଜି ଏ ସତ ଭୋରଅର୍ ହେଲାଣି, ତମେ ପାଟିରେ ପାଣି ଟିକେ ବ ଦେଇନ ।

ସୁଲୋଚନା : କ'ଣ କହିଲୁ—ସକାଳ ହେଲାଣି ?

ମଲ୍ଲୀମା : ହଁ ପରା । ତମେ ଏ ଘର ଭିତରେ ବସିଚ ଜାଣିପାରିନ ।

ସୁଲୋଚନା : ହଉ—ଭୁ ପା'·· (ଯେମିତି କିଛି କହିପାରୁନଥା'ନ୍ତି)

ମଲ୍ଲୀମା : ମା' ବାବୁ କ'ଣ···

ସୁଲୋଚନା : ଏଁ ? ହଁ ଶୋଇଚନ୍ତି ।

ମଲ୍ଲୀମା : ମତେ କ'ଣ କହୁଥିଲ ପରା ?

ସୁଲୋଚନା : କହୁଥିଲି ହଁ, ଭୁ ପା' କେତେହେଲେ କଡ଼ ସେ ଗାଈ ଦୁହିଁବ ।

ମଲ୍ଲୀମା : ଏତେ ସକାଳୁ ? କ୍ଷୀର କ'ଣ ଏବେ ଆଜିଠା ହବ ?

ସୁଲୋଚନା : ହଁ ଭୁ ପା'—ପୁଷ୍ପାଙ୍କ କଡ଼ ଗରମ୍ପାଣି ବସେଇବ ବାବୁ ଗାଧେଇବେ । (ମଲ୍ଲୀମା' ଚାଲିଗଲେ । ସା'ନ୍ତାଣୀଙ୍କ ଆଖିରୁ ଅନବରତ ଲୁହ ଝରୁଛି । ପାଣି ନେଇ ମଲ୍ଲୀ ଆସିଲା—ସା'ନ୍ତାଣୀ ପାଣି ନେଇ ବାବୁଙ୍କ ମୁହଁ ଆଖିରେ ଭଲ ଭାବରେ ଛିଞ୍ଚିଲେ । ଟିକିଏ ପରେ ବାବୁ ଆଖି ଖୋଲି ଚାହିଁଲେ) ଟିକିଏ...ଟିକିଏ ଏ ପାଖକୁ ମୁହଁ ବୁଲେଇ ଚାହିଁଲ । (ବାବୁ ମୁହଁ ବୁଲେଇଲେ)

ଚନ୍ଦ୍ରମଣି : କ'ଣ କହୁଚ ?

ସୁଲୋଚନା : (ମୁହଁ ତଳକୁ କରି ଆଖି ପୋଛି) ନାଇଁ, ମୁଁ କିଛି କହୁନାହିଁ। ତମେ ଶୁଅ, ମୁଁ ଆସୁଚି। ମକର, ବାବୁଙ୍କ ପାଦ ତଳ ଟିକେ ଆଉଁସି ଦଉଥା। (ଧିରେ ଚାଲିଗଲେ। ମକର ପାଦ ଆଉଁସୁଥାଏ)

ଚନ୍ଦ୍ରମଣି : (ପ୍ରାୟ କ୍ଷୀଣ ସ୍ୱରରେ) ମକର !

ମକର : ଆଜ୍ଞା !

ଚନ୍ଦ୍ରମଣି : ମୁଁ ତ ଏ ଖଟ ଉପରେ ଆସି ଶୋଇଲି···

ମକର : ହଁ ହଜୁର୍, ଆପଣ ଶୋଇଲେ।

ଚନ୍ଦ୍ରମଣି : ସେଇଠୁ ? ମା' କ'ଣ କରୁଥିଲେ ?

ମକର : (ସାଙ୍ଗେ ସାଙ୍ଗେ) କାନ୍ଦୁଥିଲେ।

ଚନ୍ଦ୍ରମଣି : (ବ୍ୟସ୍ତ ହେଇ) କାନ୍ଦୁଥିଲେ ?

ମକର : ହଜୁର୍ କାନ୍ଦୁଥିଲେ । ପଦେ କ'ଣ କହିବାକୁ ଯାଇ ସେ ପଦଟା ଭୁଲିଯାଇ କାନ୍ଦୁଥିଲେ । ରାତି ପାହି ସକାଳ ହେଲଣି ଅନବରତ କାନ୍ଦୁଥିଲେ।

[ଗ୍ଲାସ୍‌ରେ ଦୁଧ ଆଣି ସା'ନ୍ତାଣୀ ଆସିଲେ। ଗ୍ଲାସ୍ ଢଙ୍କା ହେଇଥାଏ]

ସୁଲୋଚନା : ମକର, ତୁ ଯା' ମୁଁହଧୁଆ ସରଞ୍ଜାମ ଆଉ ପାଣି ଟିକିଏ ଆଣ। (ମକରର ପ୍ରସ୍ଥାନ)

ଚନ୍ଦ୍ରମଣି : ତୁମେ କାନ୍ଦୁଥିଲ ! କିଛି କହୁନ ଯେ, କାନ୍ଦୁଥିଲ ?

ସୁଲୋଚନା : କିଏ କହିଲା ?

ଚନ୍ଦ୍ରମଣି : ମତେ ମକର କହିଲା। ତୁମ ମୁହଁ ଆଖି ତ କହିଦଉଚି ତୁମେ କାନ୍ଦୁଥିଲ।

ସୁଲୋଚନା : ତୁମେ ବେହୋସ ହୋଇଗଲ !

ଚନ୍ଦ୍ରମଣି : (ଉଠି ବସି) ଶୁଣ, ହଁ ମୁଁ ବେହୋସ ହୋଇଯାଇଥିଲି । କିନ୍ତୁ ତୁମ ମାଡ଼ ପାଇଁ ନୁହେଁ । ଜୀବନରେ ଏଇ ପ୍ରଥମେ ଯେତେବେଳେ ମୁଁ ବୁଝିପାରିଲି ଯେ, ମୁଁ ତୁମ ପ୍ରତି ଯେଉଁ ଅନ୍ୟାୟ ଓ ଅନୀତି ଆଚରଣ କରିଆସିଛି···

ସୁଲୋଚନା : ନା ନା, ତୁମ ପାଦ ଧରୁଚି ତୁମେ ଏସବୁ କଥା କୁହନି । ମୁଁ ଅଲକ୍ଷଣୀ···

ଚନ୍ଦ୍ରମଣି : ଶୁଣ ସୁଲୋଚନା, ମୁଁ ଯାହା କହୁଚି ଶୁଣ । ମୁଁ ଯେତେବେଳେ ବୁଝିପାରିଲି ମୋ ପାପର ଫଳ ମୁଁ ଭୋଗୁଚି, ସେତିକିବେଳେ ମୋ ଭିତରେ ସଦ୍‌ଜ୍ଞାନ ଉଦୟ ହେଲା, ଆଉ ସେଇ ଆନନ୍ଦରେ ମୁଁ କିଛି ମୁହୂର୍ତ୍ତ ତୁମଠୁ ଦୂରେଇ ଯାଇଥିଲି । (ହସି) ତୁମ ମାଡ଼ ପାଇଁ ମୁଁ ବେହୋସ ହୋଇନି ।

[ମକର ପାଣି ପ୍ରଭୃତି ଆଣିଲା]

ସୁଲୋଚନା : ଏଇ ତ ଭୋର ହେଲାଣି । ତୁମେ ଆଗେ ମୁହଁ ଧୋଇ ଏଇ ଗରମ ଦୁଧ ଟିକକ ପିଇ ଦିଅ । ପରେ ଯାହା ନିତ୍ୟକର୍ମ କରିବ । (ବାବୁ ମୁହଁ ଧୋଇଲେ । ସୀମନ୍ତିନୀ ନିଜ ହାତରେ ତାଙ୍କୁ ପିଆଇଦେଲେ । ବାବୁ ଉଠି ଠିଆହେଲେ)

ସୁଲୋଚନା : କୁଆଡ଼େ ଉଠିଲ ?

ଚନ୍ଦ୍ରମଣି : (ହସି) ବେଳ ହୋଇଗଲା, ବୁଲିଯିବିନି ?

ସୁଲୋଚନା : (ବାବୁଙ୍କ ମୁହଁକୁ କେବଳ ଚାହିଁରହିଲେ)

ଚନ୍ଦ୍ରମଣି : ଚାହିଁଚ କ'ଣ ? ମକରକୁ କୁହ ଗାଡ଼ି ଠିକ୍ କରି ରଖିବ । ନିତ୍ୟକର୍ମ ଶେଷ କରି ଏକା ମୁଁ ନୁହେଁ ଆମେ ଦୁହେଁ

ଗାଡ଼ିରେ ବସି କଟକ ସହର ଭିତରେ ଦେବଦେବୀ-
ମାନଙ୍କୁ ଦର୍ଶନ କରିଆସିବା । ଧାରଣା ହେଉଥିଲା ।
ମୋ ଦେହ ସମ୍ପୂର୍ଣ୍ଣ ଭଲ ହୋଇଯାଇଛି ତ । (ବୁଢ଼ାଙ୍କ ମୁହଁରେ
ହସ)

ଚନ୍ଦ୍ରମଣି : କେବଳ ଅଜି ନୁହେଁ, ଏତେଦିନ ଧରି ମୁଁ ତମ ପାଖରେ
ଅତିବଡ଼ ଅପରାଧ କରି ଆସିଛି (ଖଟ ଉପରେ ବସିଥା'ନ୍ତି)

ସୁଲୋଚନା : ମତେ ତୁମେ ଆଉ ଲଜରେ ବୁଡ଼ାଅ ନାହିଁ । ମୁଁ ଅଲକ୍ଷଣୀ
ଯାହା କରିଛି, ସେଥିରେ ମୁଁ ମରଣ-ଯନ୍ତ୍ରଣା ଦେଇ
ରହିଛି । (ବାବୁଙ୍କ ପାଦ ଧରି) ଏମିତି ତମ ପାଦ ଧରି ବସି
ରହିଲେ କେଜାଣି ମୋ ପାପ କଟିଯିବ ।

[ବାବୁ ବିଚଳିତ ହୋଇପଡ଼ିଲେ । ତାଙ୍କ ଆଖି କୋଣରୁ ଦୁଇବନ୍ଦ
ଲୁହ ଝରିଆସିଲା । ସ୍ନେହରେ ସେ ସା'ନ୍ତାଣୀଙ୍କ ମଥା ଆଉଁସି
ଦଉଥା'ନ୍ତି ।...ଏକ ସୁଖମୟ ପରିବେଶ]

ମକର : (ବାହାରୁ) ମା' ସା'ନ୍ତାଣୀ ।

ସୁଲୋଚନା : ଆ' ମକର (ମକର ଆସିଲା)

ମକର : ଗାଧୁଆଘରେ ଗରମପାଣି ଦେଲିଣି ।

ସୁଲୋଚନା : ହଁ । ଶୁଣ୍, ପୁଷ୍ପାଙ୍କ ଯାଇ କହ ଜଳଖିଆ ପାଇଁ ଲୁଚି
ଛାଣିବ, ବେଶୀ କଡ଼ା କରିବନି । ଯା' (ମକର ଚାଲିଗଲା)
(ବାବୁଙ୍କୁ) କୁହ, ଲୁଚି ସାଙ୍ଗକୁ ଆଉ କ'ଣ କରିବ ?

ଚନ୍ଦ୍ରମଣି : ହୁକୁମ୍‌ଦବା ଲୋକ ତୁମେ ! (ସା'ନ୍ତାଣୀଙ୍କ ମୁହଁ ଚାହିଁ)

ସୁଲୋଚନା : ଆଜି ହନସାର ତା' ହେଲେ ମୁଁ ତମକୁ ଆଉ କିଛି କହିବି
ନାହିଁ । (ବାବୁ ଦୁଇ ପାପୁଲିରେ ସା'ନ୍ତାଣୀଙ୍କ ମୁହଁ ଟେକି ଧରି)

ମୋ ମୁହଁକୁ ଗୁହିଁଲ, ହଁ ଗୁହଁ । ଯାହା ତୁମେ ମତେ ଏବେ କହୁଲ, ଆଉ ଥରେ କୁହ ଦେଖି !

ସୁଲୋଚନା : (ହସି) ହଉ କୁହ ଲୁଚ ଯାଗରେ ପୁଝାରୀ ଆଉ କ'ଣ କରିବ ?

ଚନ୍ଦ୍ରମଣି : ଅଙ୍କୁ ପୋସ୍ତ ଦମ୍, ଚଳିବ ?

ସୁଲୋଚନା : ଚଳିବ ଯେ, ବଉମ୍ପୁତୁଆ ପୁଝାରୀ—ଗୁରିଟା ଜାଗାରେ ଛଅଟା ଦକ୍ଷିଣୀ ନଙ୍କା ନ ବାଟିଲେ ସେ ଅଳୁଦମ୍ କରି-ପାରିବନ । ସେଥିପାଇଁ ଟିକିଏ—ପାୟସ୍ । ହଉ ତୁମେ ବାଥରୁମ୍କୁ ଯାଅ, ମୁଁ ତଳକୁ ଯାଉଚି ।

[ ମଞ୍ଚ ଅନ୍ଧକାର ହେଲ । କିଛି ସମୟ ପରେ ଆଲୋକିତ ମଞ୍ଚରେ ଦେଖାଗଲ ବାବୁ ଅଉ ସା'ନ୍ତାଣୀ ବାହାରକୁ ଯିବା ପାଇଁ ପ୍ରସ୍ତୁତ ହୋଇ ହେବେ ]

ସୁଲୋଚନା : ମଟର ଗାଡ଼ି ଡାକିଲଣି ।

ଚନ୍ଦ୍ରମଣି : କଟକ ସହର ବୁଲିଯିବା ତ ?

ସୁଲୋଚନା : ହଁ । ସବୁ ଦେବଦେବୀଙ୍କୁ ଯାଇ ଦର୍ଶନ କରିଆସିବା ।

ଚନ୍ଦ୍ରମଣି : ହଁ । ସବୁଠିକି ଯିବା ।···ମୁଁ ଗୋଟାଏ କଥା ଭବୁଥିଲି ।

ସୁଲୋଚନା : କ'ଣ କି କଥା ?

ଚନ୍ଦ୍ରମଣି : ଏଇ ଟିକିଏ ଆଗରୁ ଆମ ସାଇ ଶ୍ୟାମଘନ ବାବୁଙ୍କ ସହିତ ଆମର ଏଇ ଘର ସାମ୍ନାରେ ଦେଖା ହୋଇଗଲ । ଜାଣିଚ ତ, ସିଏ ମୋର ଜଣେ ପ୍ରକୃତରେ ଉପକାରୀ ବନ୍ଧୁ । ତୁମପରି ସେ ସବୁବେଳେ ଗୁହୁଁଥିଲେ ମୁଁ କେମିତି ଭଲ ବାଟକୁ ଫେରିଆସିବି ।

ସୁଲୋଚନା : ହଁ ଯେ, ଦେଖାଦେଲାବେଳେ ତମକୁ କ'ଣ ସେ କଣ୍ଟି କହୁଚନ୍ତି ?

ଚନ୍ଦ୍ରମଣି : ଗ୍ଲୁଞ୍ଜୁଣୀ ମାତ୍ର କଥାଟା ତ ସେ ଜାଣିଚନ୍ତି ।

ସୁଲୋଚନା : (ଡରଯାଇ) ସେ କେମିତି ଜାଣିଲେ ?

ଚନ୍ଦ୍ରମଣି : (ହସି) ଗ୍ଲୁଞ୍ଜୁଣୀ ନ ଉଠାଇ ତମେ ଯଦି ସେତେବେଳେ ମତେ ଖାଲି ଟିକଏ ଚମୁଟି ଦେଇଥା'ନ୍ତ, ତେବେ ବ ସେ କଥାଟା ଏ ମହଲର ଚାରିଆଡେ ବ୍ୟାପିଯାଇଥାନ୍ତା ।

ସୁଲୋଚନା : (ଢୋକ ଢୋକ) ଶ୍ୟାମଘନ ବାବୁ କ'ଣ କହିଲେ କୁହ ।

ଚନ୍ଦ୍ରମଣି : ନାଇଁ, ତମେ ଡରିଯାଅନା । ଘଟଣାଟାର ମୂଳ କାରଣ ଗ୍ଲୁଞ୍ଜୁଣୀ ମୂଠା ନୁହେଁ, କାରଣ ହେଉଚି—ମୁଁ ! ଅର୍ଥାତ୍ ମୁଁ ଯେଉଁ ଅବସ୍ଥାରେ ଗତ ଅଧରେ ଘରକୁ ଫେରିଲି, ସେଇଥିପାଇଁ ଗ୍ଲୁଞ୍ଜୁଣୀମୂଠା ଉଠିଲା ।

[ ବାବୁଙ୍କ ମୁହଁରେ ହସ—ସା'ନ୍ତାଣୀ ସେମିତି ହସହସ ମୁହଁ ତଳକୁ କଲେ )

ସୁଲୋଚନା : ଶ୍ୟାମଘନବାବୁଙ୍କ କଥା କ'ଣ ସବୁ କହୁଥିଲ ?

ଚନ୍ଦ୍ରମଣି : ତମର ଯୋଉ ଔଷଧରେ ମୋର ରୋଗ ବେମାର ସବୁ ଛାଡ଼ିଗଲା···

ସୁଲୋଚନା : ରୋଗ ବେମାର !

ଚନ୍ଦ୍ରମଣି : ଆରେ ବାବୁ, ବୋତଲଠାରୁ ଚାଲିଯାଏ ମୁଁ ଯୋଉଥିରେ ଘାଣ୍ଟି ହେଉଥିଲି, ସେ ସବୁ ମୋର ରୋଗବେମାର ନୁହେଁ ତ ଆଉ କ'ଣ ?

ସୁଲୋଚନା : (ଭଲ ମନରେ) ଓ !

ଚନ୍ଦ୍ରମଣି : ସେଇକଥା ଶ୍ୟାମଘନ କହୁଥିଲେ ଯେ ତମର ଯେଉଁ ଔଷଧରେ ମୋର ଏ ରୋଗବେମାରୀ ଘୁଞ୍ଚିଗଲା, ସେଇଟା ହେଲା ତମର ପେଟେଣ୍ଟ ମେଡ଼ିସିନ୍ !

ସୁଲୋଚନା : ପେଟେଣ୍ଟ ମେଡ଼ିସିନ୍ ! ପେଟେଣ୍ଟ ମେଡ଼ିସିନ୍ ପୁଣି କ'ଣ ?

ଚନ୍ଦ୍ରମଣି : ମେଡ଼ିସିନ୍ ଅର୍ଥାତ ବୁଝୁଚ—ଔଷଧ । ପେଟେଣ୍ଟ ମେଡ଼ିସିନ୍ ହେଲା—ଠିକ୍ ରୋଗକୁ ଠିକ୍ ଔଷଧ ।

ସୁଲୋଚନା : ଯାଃ !

ଚନ୍ଦ୍ରମଣି : ଯାଃ ଫାଃ ନୁହେଁ । ମୋ ରୋଗ ପାଇଁ ତମର ଗୁଞ୍ଜୁଣୀ ମୁଠାଟା ହେଲା ଠିକ୍ ଔଷଧ—ପେଟେଣ୍ଟ ମେଡ଼ିସିନ୍ । ତମେ ଆବିଷ୍କାର କରିଚ, ତମେ ପ୍ରୟୋଗ କରିଚ ।

ସୁଲୋଚନା : ମୁଁ ସେ ପେଟେଣ୍ଟ୍ ଫେଟେଣ୍ଟ୍ କିଛି ଜାଣିନି । ତମେ ଭଲରେ ରହିଲେ ମୋର ସବୁ ଭଲ ।

ଚନ୍ଦ୍ରମଣି : ଖାଲି ଆମ ଭଲରେ ତ ସଂସାର ଚଳିବ ନାଇଁ ସୁଲୋଚନା ଦେଈ । ଭାଗ୍ୟ ଦୋଷରୁ ଯଦି ଆଉ କେହି ସ୍ୱାମୀ ମୋ ପରି ଏହି ରୋଗ ଭୋଗୁଥା'ନ୍ତି, ତେବେ ତାଙ୍କ ଶ୍ରୀମତୀଙ୍କୁ ମୋର ସବିନୟ ପୁରସରଃ ନିବେଦନ ମିଦମ୍, ସିଏ ତମର ଏଇ ପେଟେଣ୍ଟ୍ ମେଡ଼ିସିନ୍‌କୁ ଥରେ ଚଳାଇ ପରୀକ୍ଷା କରି ଦେଖନ୍ତୁ, ସୁଫଳ ନିଶ୍ଚୟ ଫଳିବ—ମୋ ପରି ଯେତେ ପିଟଲା ପରି ସ୍ୱାମୀ ଥିବେ, ସେମାନେ ସମସ୍ତେ ଖାଣ୍ଟି ସୁନା ପାଲଟିଯିବେ ।





ଓଡ଼ିଶାର ସର୍ବାଧିକ ଲୋକପ୍ରିୟ, ଖ୍ୟାତନାମା ନାଟ୍ୟକାର ଗୋପାଳ ଛୋଟରାୟ । କଟକ ଜିଲ୍ଲା ଜଗତସିଂହପୁର ଥାନା ପୁରୁଣାଗଡ଼ ଗ୍ରାମରେ ୧୯୧୬ ମସିହାରେ ତାଙ୍କର ଜନ୍ମ । 'ଭରସା' 'ପରକଲମ' ଓ "ଶଙ୍ଖ ସିନ୍ଦୁର" ପ୍ରଭୃତି ଏକୋଇଶିଟି ମଞ୍ଚ-ସଫଳ ନାଟକ, "ଶ୍ରୀମନ୍ତ ସମାଲ୍ଲନ" ଓ 'ନପାହୁ ରାତି' ପ୍ରଭୃତି ପଚିଶଟି ଗୀତିନାଟ୍ୟ ଏବଂ ପ୍ରାୟ ଅର୍ଦ୍ଧ-ସହସ୍ର ବେତାର ନାଟିକା, ଏକାଙ୍କିକା ରଚନା କରି ସେ ଓଡ଼ିଆ ନାଟ୍ୟ-ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

ଶ୍ରୀଯୁକ୍ତ ଛୋଟରାୟଙ୍କର ଉନ୍ନୋଟି ଅପେରା ନାଟକ "ଏକଦା" ପାଇଁ ୧୯୭୫ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ସରସ ଏକାଙ୍କ ନାଟିକାଗୁଚ୍ଛ "ହାସ୍ୟରସର ନାଟକ" ଲାଗି ୧୯୮୨ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଏବଂ ୧୯୮୭ ମସିହାରେ ନାଟ୍ୟରଚନା କୃତିତ୍ୱ ନିମିତ୍ତ କେନ୍ଦ୍ର ସଂଗୀତ ନାଟକ ଏକାଡେମୀ ପୁରସ୍କାର ଦ୍ୱାରା ସମ୍ମାନିତ ।

ଗତବର୍ଷ ତାଙ୍କର ଏକମାତ୍ର ଗଳ୍ପ ସଙ୍କଳନ "ସେଇ ଫୁଲ" ପ୍ରକାଶିତ ହୋଇଛି । ତାଙ୍କର ଅର୍ଦ୍ଧ ସହସ୍ରାଧିକ ଏକାଙ୍କ ନାଟିକା ଓ ଗୀତିନାଟ୍ୟ ମଧ୍ୟରୁ ଏହା ହେଉଛି ତାଙ୍କର ପ୍ରଥମ ସଙ୍କଳନ "ଶ୍ରେଷ୍ଠ ଏକାଙ୍କିକା" ସଙ୍ଗ୍ରହ ।